# ମୀନା ଜ୍ୟାମିତି କୁ ଘୃଣା କରୁଥିଲା

ସୁଜାତା ଭାବୁଥିଲା ଛି, ଜ୍ୟାମିତିଟା କି କ୍ଳାନ୍ତିକର,
କି ବିରକ୍ତିକର !
ତାକୁ ଆଦୌ ଭଲଲାଗୁ ନ ଥିଲା ସେ ସବୁ ଆକ୍ୟୁଟ,
ଅବଟ୍ୟୁସ କୋଣ ପାରାଲାଲୋଗ୍ରାମ, ହେକ୍ସାଗନ ।
ସତରେ ସୁଜାତା କାହିଲ ହେଇଯାଉଥିଲା !
ପରେ ଗୋଟିଏ ମଜା କଥା ଘଟିଲା: ତାର ଭାଇ ରାଜୁ ତା
ପାଇଁ ଗୋଟିଏ ସୁନ୍ଦର ହଳଦିଆ, ନାରଙ୍ଗୀ ରଙ୍ଗର
ରୁପାଭଳି ଚକଚକ ବଢ଼ିଆ କମ୍ପାସ ଆଣିଦେଲେ ।
କମ୍ପାସ ବକ୍ସ ଓ ତାର ଭିତରର ଉପକରଣ ଦେଖି ମୀନାର
କି ଖୁସି ! ସେ ଦିନ ରାତିରେ ସେ ସ୍ୱପ୍ନ ଦେଖିଲା ସେ
ଯେପରି ଟ୍ରାଙ୍ଗଲର ଶୀର୍ଷ ଉପରକୁ ଚଢୁଛି, ସର୍କଲ୍ ମଝିରେ
ଘୁରୁଛି; ସ୍କେଲରେ ଭାରସାମ୍ୟ ରଖୁଛି । କି ଯେ ମଜା !
ବର୍ତ୍ତମାନ ଜ୍ୟାମିତି, ହେକ୍ସାଗନ, ପାରାଲାଲୋଗ୍ରାମ ସବୁ ଭଲ
ଲାଗୁଛି । ଏମିତି ମୀନା ଜ୍ୟାମିତିକୁ ଭଲ ପାଇଲା ।
ଆଶ୍ଚର୍ଯ୍ୟର କଥା — ନୁହେଁ-କି ?





## କ୍ୟାମେଲ
ଇନଷ୍ଟ୍ରୁମେଣ୍ଟ ବକ୍ସ








କ୍ୟାମଲିନ
ପ୍ରାଇଭେଟ ଲି.
ଆର୍ଟ ମ୍ୟାଟେରିଆଲ
ଡିଭିଜନ
ଜେ. ବି. ନଗର
ବମ୍ବେ-୪୦୦ ୦୫୯

କ୍ୟାମଲିନ ଅରଙ୍ଗା ପେନ୍ସିଲର
ନିର୍ମାତାଙ୍କ ଠାରୁ



VISION 794 ORI

# मुफ्त ! मुफ्त !! मुफ्त !!!

हमारी कंपनी ने पूरे हिंदुस्तान में बहुत नाम कमाया है. पांच साल गारंटी का माल पहले पहल हमने ही बनाया है. पंद्रह साल की कोशिश और तजुर्बे के बाद हमने यह माल बनाया है. हिंदुस्तान की तमाम कंपनियों में हमारी कंपनी एकदम बडी है. हमारी कंपनी के समस्त जेवरों की सूची तथा उनके मल्य आप घर बैठे ही मुफ्त मंगा सकते हैं. हमारे बहुमूल्य केटलाग को देखकर आप अपनी मनपसंद चीज सिर्फ नंबर लिखकर वी.पी.पी.



**ESTD. 1963**

## MERI GOLD COVERING WORKS

P. B. No. 1405, No. 14, Ranganathan ST., T. Nagar, Madras-600017.

# 'ଜହ୍ନମାମୁଁ'ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଉଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତୀ ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡଲ୍‌ଟନ୍ ଏଜେନ୍‌ସୀଜ୍, ମାଡ୍ରାସ - ୬୦୦ ୦୨୬

---




# ଜହ୍ନମାମୁଁ

ସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗିରେଡ୍ଡୀ

ଜୀବନରେ ଆମକୁ କେତେ ପ୍ରକାର କର୍ତ୍ତବ୍ୟବୋଧର ତାଡ଼ନା ଅନୁଭବ କରିବାକୁ ହୋଇଥାଏ । କେଉଁ କର୍ତ୍ତବ୍ୟକୁ ଛାଡ଼ି କାହାକୁ ସମ୍ପାଦନ କରିବା ? ଏହାର କୌଣସି ସହଜ ଉତ୍ତର ନାହିଁ । ନିଜ ବିବେକର ତୁଳନା, ହୃଦୟର ପ୍ରେରଣା ଏବଂ ସର୍ବୋପରି ପ୍ରାର୍ଥନା ଦ୍ୱାରା କର୍ତ୍ତବ୍ୟ ନିରୂପିତ ହେବା ଲୋଡ଼ା । ଏ ସଂଖ୍ୟାର ବେତାଳକଥା ଦ୍ରଷ୍ଟବ୍ୟ ।

## ଅମରବାଣୀ

ନମନ୍ତି ଫଳିତା ବୃକ୍ଷା ନମନ୍ତି ଚ ବୁଧା ଜନାଃ ।
ଶୁଷ୍କକାଷ୍ଠାନି ମୂର୍ଖାଶ୍ଚ ଭିଦ୍ୟନ୍ତେ ନ ନମନ୍ତି ଚ ॥

ଫଳବନ୍ତ ବୃକ୍ଷ ନଇଁ ପଡ଼େ, ଜ୍ଞାନୀ ବି ସେମିତି ନମ୍ର ହୁଅନ୍ତି । କିନ୍ତୁ ଶୁଖିଲା କାଠ ଓ ମୂର୍ଖ ଭାଙ୍ଗି ଯିବେ, ନମ୍ର ହେବାକୁ ଶିଖିବେ ନାହିଁ ।

ବର୍ଷ : ୧୩ ଏପ୍ରିଲ ୧୯୮୦ ଅଙ୍କ : ୧୦

ପ୍ରତିସଂଖ୍ୟା : ଟ ୧.୫୦ ବାର୍ଷିକ ମୂଲ୍ୟ : ଟ ୧୮.୦୦




ପ୍ରଶ୍ନ : ବୌଦ୍ଧଧର୍ମର ଉତ୍ପତ୍ତିସ୍ଥଳ ଭାରତବର୍ଷ । ତଥାପି ବୌଦ୍ଧଧର୍ମ ପୃଥିବୀର ଅନ୍ୟାନ୍ୟ ଦେଶରେ ବହୁଳ ଭାବରେ ପ୍ରଚଳିତ ଥିବା ସତ୍ତ୍ୱେ ଭାରତବର୍ଷରୁ ଲୁପ୍ତ ହୋଇଯିବାର କାରଣ କ'ଣ ?

ଉତ୍ତର : ଚୀନ, ତିବ୍ବତ, କାମ୍ବୁଡିଆ, ଶ୍ୟାମ, ସିଂହଳ ଇତ୍ୟାଦିରେ ବିପୁଳ ସଂଖ୍ୟକ ବୌଦ୍ଧ ଅଛନ୍ତି ସତ, କିନ୍ତୁ ଗୋଟିଏ କଥା ଭୁଲିଗଲେ ଚଳିବ ନାହିଁ ଯେ ବୁଦ୍ଧଦେବଙ୍କ ପ୍ରବର୍ତ୍ତିତ ବୌଦ୍ଧଧର୍ମର ମୌଳିକ ନୀତି ସହ ବୌଦ୍ଧ ବୋଲାଉଥିବା ଏହି ଜନତାର ଜୀବନଧାରଣ ପଦ୍ଧତିର ସାମଞ୍ଜସ୍ୟ ସାମାନ୍ୟ ।

ଭାରତରେ ବୌଦ୍ଧଧର୍ମ ବିଶେଷ ପ୍ରଭାବ ବିସ୍ତାର କରି ନ ପାରିବାର କାରଣ, ବୌଦ୍ଧଧର୍ମ ପ୍ରବର୍ତ୍ତିତ ହେବାର ବହୁ ପୂର୍ବରୁ ହିନ୍ଦୁଧର୍ମ ଅନୁସରଣରେ ଭାରତରେ ଯେଉଁ ପ୍ରକାର ସମାଜ ବ୍ୟବସ୍ଥା ଚାଲୁ ହୋଇଥିଲା, ତାହାର ମୂଳଦୁଆ ଅତ୍ୟନ୍ତ ଶକ୍ତ ଥିଲା । ତା'ଛଡ଼ା ବୌଦ୍ଧଧର୍ମର ଶେଷ ଲକ୍ଷ୍ୟ ନିର୍ବାଣ ହୋଇଥିବା ଦୃଷ୍ଟିରୁ ତାକୁ ଜୀବନ-ବିମୁଖ ଧର୍ମ ବୋଲି କୁହାଯାଇପାରେ । ଜୀବନରେହିଁ ଶାନ୍ତି ସୁଖ ପାଇବାକୁ ସମସ୍ତେ ଆଗ୍ରହୀ । ଜୀବନରୁ ନିର୍ବାଣ ଲଭିବାର ଆଦର୍ଶକୁ ଅତି ଅଳ୍ପ ସଂଖ୍ୟକ ଲୋକେ ଗ୍ରହଣ କରି ପାରନ୍ତି । ପୁଣି ସେହି ନିର୍ବାଣର ଦର୍ଶନକୁ ବୁଦ୍ଧଙ୍କ ପରେ ପରେ ଆବିର୍ଭୂତ ଶଙ୍କରାଚାର୍ଯ୍ୟଙ୍କ ଭଳି ହିନ୍ଦୁ ମହାପୁରୁଷମାନେ ମଧ୍ୟ ପ୍ରଚାର କଲେ । ଫଳରେ ନିର୍ବାଣର ଲକ୍ଷ୍ୟସାଧନ ନିମନ୍ତେ ହିନ୍ଦୁମାନଙ୍କୁ ନିଜ ଧର୍ମ ଛାଡ଼ି ଗୋଟିଏ ନୂଆ ଧର୍ମ ଗ୍ରହଣ କରିବାର ଆବଶ୍ୟକ ପଡ଼ିଲା ନାହିଁ । ପୁଣି ବୌଦ୍ଧଧର୍ମକୁ ମଧ୍ୟ ହିନ୍ଦୁଧର୍ମ ଭିତରେ ପ୍ରକାଶ କରାହେଲା ।

ସମ୍ରାଟ ଅଶୋକଙ୍କ ସମୟରେ ବୌଦ୍ଧଧର୍ମ ତାଙ୍କ ପୃଷ୍ଠପୋଷକତା ଦ୍ୱାରା ବିଶେଷ ପ୍ରସାର ଲାଭ କରିଥିଲା । ସେ ଥିଲେ ପ୍ରଭାବଶାଳୀ ସମ୍ରାଟ୍ । ବିଶାଳ ଭୂଖଣ୍ଡ ଉପରେ ସେ ଶାସନ କରୁଥିଲେ । କଳିଙ୍ଗ ଯୁଦ୍ଧ ପରେ ପରେ ସେ ଯେତେବେଳେ ବୌଦ୍ଧବାଦୀ ହେଲେ, ସେତେବେଳକୁ ତାଙ୍କ ସହ ଲଢ଼ିବାର ସାହସ ଅନ୍ୟ କୌଣସି ରାଜାଙ୍କର ନ ଥିଲା । କିନ୍ତୁ ତାଙ୍କ ପରେ ତାଙ୍କ ବଶ୍ୟତା ସ୍ୱୀକାର କରିଥିବା ରାଜାମାନେ ପୁଣି ସ୍ୱାଧୀନ ବୋଲାଇବାକୁ ମନ ବଳାଇଲେ, ରାଜ୍ୟ ବିସ୍ତାର କରିବାକୁ ଚାହିଁଲେ । କ୍ଷତ୍ରିୟଗୁଣର ବିକାଶ ଦିଗରେ ସେମାନେ ମନ ଦେଲେ । କ୍ଷତ୍ରିୟଗୁଣ ଓ ବୌଦ୍ଧଧର୍ମ ପରସ୍ପର ବିରୋଧୀ ଫଳରେ ବୌଦ୍ଧଧର୍ମ ଆଉ ରାଜକୀୟ ପୃଷ୍ଠପୋଷକତା ପାଇଲା ନାହିଁ ।



# ପଞ୍ଚତନ୍ତ୍ର

ହାଓ୍ୱାରେ ମହଲ ବନାଉଥିବା ବ୍ରାହ୍ମଣର

କାହାଣୀଟି ଶୁଣାଇସାରି ଅନ୍ତଲେଖୀ କହିଲା, "ଅବାସ୍ତବ ସ୍ୱପ୍ନରେ ବିଭୋର ହୋଇ ବ୍ରାହ୍ମଣ ଯେମିତି ନିଜର ସଞ୍ଚିତ ଜିନିଷତକ ହରାଇଲା, ତୁମେ ବି ସେମିତି କଲ !"

ଅତ୍ୟନ୍ତଲେଖୀ କହିଲା, "ଆରେ ଭାଇ, ମୋ ତୁଳନାରେ ସେ ବ୍ରାହ୍ମଣ ବହୁତ ଭାଗ୍ୟବାନ୍ । ସେ ଯାହା ହରାଇଲା, ତାହା ସାମାନ୍ୟ । କିନ୍ତୁ ମୁଁ ହାତରେ ସୁନା ପାଇ ତାକୁ ହରାଇଲି । ପୁଣି ବର୍ତ୍ତମାନ ମୋତେ ଯେଉଁ କଷ୍ଟ ପାଇବାକୁ ହେଉଛି, ତାହା ଦୈହିକ ।"

"ବନ୍ଧୁ, ତୁମର ଏ କଷ୍ଟ ଦେଖି ମୋତେ ଲାଗୁଛି ମୁଁ ଯେପରି ପାଗଳ ହୋଇଯିବି ! ମାଙ୍କଡ଼ର ଦୁଃଖ ଦେଖି ନ ପାରି ରାକ୍ଷସ ଯେମିତି ପଳାଇଥିଲା, ମୁଁ ମଧ୍ୟ ସେହିପରି ଏଠାରୁ ପଳାଇଯିବା ଉଚିତ ହେବ ।"

ମାଙ୍କଡ଼ ଓ ରାକ୍ଷସ ସମ୍ପର୍କୀୟ ସେ କାହାଣୀ ଶୁଣିବା ନିମନ୍ତେ ଅତ୍ୟନ୍ତଲେଖୀ ଇଚ୍ଛା ପ୍ରକାଶ କରିବାରୁ ଅନ୍ତଲେଖୀ ଗପିଲା :

## ପ୍ରତାରିତ ରାକ୍ଷସର କାହାଣୀ

ଗୋଟିଏ ନଗରୀରେ ରାଜୁତି କରୁଥିଲେ ଭଦ୍ରସେନ ନାମକ ରାଜା । ତାଙ୍କର ଗୋଟିଏ କନ୍ୟା ଥିଲା । ତା' ନାମ ରତ୍ନବତୀ । ସେ ରୂପରେ ଯେପରି ଅସାମାନ୍ୟା, ଗୁଣରେ ମଧ୍ୟ ସେହିପରି ।

ରତ୍ନବତୀଙ୍କ ରୂପରେ ମୁଗ୍ଧ ହୋଇ ଏକ ରାକ୍ଷସ ତାଙ୍କୁ ହରଣଚାଲି କରିନେବାକୁ ବହୁତ ଚେଷ୍ଟା କଲା । କିନ୍ତୁ ରତ୍ନବତୀ ସତର୍କ ଥାଇ ତା' ଉଦ୍ୟମକୁ ପଣ୍ଡ କରିଦେଉଥାନ୍ତି ।

ଦିନେ ରାକ୍ଷସ ଲୁଚି ବସିଥାଏ । ରାଜକନ୍ୟା ତାଙ୍କ ସଖୀକୁ କହୁଥାନ୍ତି, "ପ୍ରଦୋଷ ନାମକ



ରାକ୍ଷସ ମୋତେ ବଡ଼ ହଇରାଣ କଲାଣି । ତା' ଦୁଷ୍ଟାମି କିପରି ବନ୍ଦ କରିବ, ସେ କଥା ବୁଝିପାରୁନାହିଁ ।"

ରାକ୍ଷସ ସେ କଥା ଶୁଣି ଭାବିଲା, "ମୋ ଦୁଷ୍ଟାମି ତ ରାଜକନ୍ୟା ବେଶ ଭଲ ଭାବରେ ବନ୍ଦ କରି ପାରୁଛି । ଅତଏବ ସେ ଯାହା ଦୁଷ୍ଟାମି ବନ୍ଦ କରି ପାରୁ ନାହିଁ, ସେ ନିଶ୍ଚେ ଆଉ କୌଣସି ଗୋଟାଏ ରାକ୍ଷସ । ତା'ର ସନ୍ଧାନ ନେବାକୁ ହେବ ।"

ଏହା ପରେ ସେ ଘୋଡ଼ା ପାଲଟିଯାଇ ରାଜାଙ୍କ ଘୋଡ଼ାଶାଳରେ ଯାଇ ଅପେକ୍ଷା କଲା ।

ସେହି ରାତରେ ଗୋଟାଏ ଚୋର ଘୋଡ଼ାଶାଳରେ ପହଞ୍ଚି ସବୁଠାରୁ ହୃଷ୍ଟପୁଷ୍ଟ ଦେଖି ଯେଉଁ ଘୋଡ଼ାକୁ ଚୋରାଇନେଲା, ସେ ହେଲା ଘୋଡ଼ାବେଶୀ ସେହି ରାକ୍ଷସ ।

ଘୋଡ଼ା ପିଠିରେ ବସିଯାଇ ଚୋର ତାକୁ ଦୌଡ଼ାଇଲା । ଘୋଡ଼ା ତୀବ୍ର ଗତିରେ ଦୌଡ଼ିଲା । ପ୍ରଥମେ ଚୋର ଖୁସୀ ହେଲା । କିନ୍ତୁ ପରେ ତାକୁ ଛନିଆ ଲାଗିବାରୁ ସେ ଲଗାମ କଷି ଘୋଡ଼ାକୁ ରୋକିବାକୁ ଚେଷ୍ଟା କଲା ।

କିନ୍ତୁ ଘୋଡ଼ାର ଗତି ବନ୍ଦ ହେଲା ନାହିଁ । କାରଣ ଘୋଡ଼ାବେଶୀ ରାକ୍ଷସ ଭାବୁଥାଏ ତା' ଉପରେ ସବାର ହୋଇଛି ପ୍ରଦୋଷ ରାକ୍ଷସ ।

ଚୋର ଭାବିଲା, "ଏଇଟା ଗୋଟେ ଘୋଡ଼ା ନୁହେଁ, ପିଶାଚ ।" ସେ ଆତଙ୍କରେ ଗୋଟାଏ ବରଗଛର ଡାଳ ଧରି ଓହଳପଡ଼ିଲା । ଘୋଡ଼ା ଦୌଡ଼ି ଚାଲିଗଲା ।

ଘୋଡ଼ାବେଶୀ ରାକ୍ଷସ ଭାବିଲା, ପ୍ରଦୋଷ ରାକ୍ଷସ ତାକୁ ଛାଡ଼ିଦେଇଛି । ସେ ଆଶ୍ୱସ୍ତ ହେଲା ।

କିନ୍ତୁ ଗଛରେ ଥାଇ ଘୋଡ଼ାବେଶୀ ରାକ୍ଷସକୁ ଚିହ୍ନିଦେଲା ତା'ର ମିତ୍ର ମାଙ୍କଡ଼ ।

"କିହୋ ! ତୁମ ପିଠିରେ ସବାର ହୋଇଥିଲା ତୁମ ଆହାର ମଣିଷ । ତୁମେ ତାକୁ ପଳାଇବାକୁ ଦେଲ କାହିଁକି ?" ମାଙ୍କଡ଼ ପଚାରିଲା ।

ଘୋଡ଼ାବେଶୀ ରାକ୍ଷସ ରାଗିଯାଇ ଦୁଇଚାରିଟା

ଡାଳ ଗଛରୁ ଖସାଇପକାଇଲା । ତାହା ଦେଖି ମାଙ୍କଡ଼ର ମୁହଁ ଶେତା ପଡ଼ିଗଲା । କିନ୍ତୁ ରାକ୍ଷସ ଭାବିଲା, ଗଛ ଚଢ଼ିଥିବା ପ୍ରଦୋଷ ରାକ୍ଷସକୁ ଦେଖି ମାଙ୍କଡ଼ ସେମିତି ଭୟତ୍ରସ୍ତ ହେଉଛି । ସେ କହିଲା, "ମାଙ୍କଡ଼ଭାଇ, ପ୍ରଦୋଷ ରାକ୍ଷସ କେଡ଼େ ଭୟଙ୍କର ସେ କଥା ତୁମେ ବୁଝିଲଣି ବୋଲି ତୁମ ମୁହଁରୁ ଜାଣୁଛି । ତୁମେ ତା' ହାତରେ ପଡ଼ିଲ । ତୁମ ଦୁର୍ଦ୍ଦଶା ମୁଁ ସହି ପାରିବିନି । ଯାଉଛି ।" ଏହା କହି ଦୋଡ଼ା ଦୌଡ଼ିପକାଇଲା । ଆଉ ନଅର ଆଡ଼େ ଗଲା ନାହିଁ ।

ଅନ୍ତଲେଖାଠାରୁ ଏ ଗଳ୍ପ ଶୁଣି ଅତ୍ୟନ୍ତଲେଖା କହିଲା, "ସବୁ ଭାଗ୍ୟର କଥା । ସେହି ଅଦ୍ଭୁତ ରାଜକନ୍ୟା ଘଟଣା ଯେମିତି ଭାଗ୍ୟଫଳର ଏକ ଦୃଷ୍ଟାନ୍ତ, ସବୁ ସେମିତି ।"

"ସେ କାହାଣୀଟି କ'ଣ ?" ଅନ୍ତଲେଖା କୌତୂହଳୀ ହୋଇ ପଚାରିଲା । ଅତ୍ୟନ୍ତଲେଖା ଗପିଲା :

## ଅଦ୍ଭୁତ ରାଜକନ୍ୟା କଥା

ମଧୁପୁରର ରାଜା ଥିଲେ ମଧୁସେନ । ତାଙ୍କର ଏପରି ଗୋଟିଏ କନ୍ୟାସନ୍ତାନ ହେଲା, ଯାହାର ତିନିଗୋଟି ସ୍ତନ । ରାଜା ନିଜ ଦରବାରୀ ଘାତକକୁ ଆଦେଶ ଦେଲେ, "ମୋର ଏ ଝିଅ ଲୋଡ଼ା ନାହିଁ । ଏହାକୁ ନେଇ ବଣରେ ଛାଡ଼ି-ଦେଇଆ ।"

ଘାତକ କହିଲା, "ଠିକ୍ କଥା ମହାରାଜ !



ମୁଁ ବି ଶୁଣିଛି, ଏଭଳି ଅଦ୍ଭୁତ ଲକ୍ଷଣଯୁକ୍ତ ଝିଅ ଜନ୍ମ ହେଲେ ବାପାର ପ୍ରାଣନାଶ ହୁଏ । ଆପଣଙ୍କ କର୍ମଫଳର ଯେପରି ଖଣ୍ଡନ ହେବ, ସେଥି ପ୍ରକାଶେ ଆପଣ କୌଣସି ବିଦ୍ୱାନ୍ ବ୍ରାହ୍ମଣଙ୍କ ପରାମର୍ଶ ନିଅନ୍ତୁ । ଆମ୍ଭେମାନେ ଯେତେହେଲେ ଅଜ୍ଞାନୀ । ଜ୍ଞାନୀଲୋକଙ୍କ ପରାମର୍ଶ ଆମର ଅବଲମ୍ବନ ହେବା ବିଧେୟ । ଜ୍ଞାନୀ ହୋଇଥିବାରୁ ସିନା ଜଣେ ବ୍ରାହ୍ମଣ ତା' ଭିତରେ ପ୍ରବେଶ କରିଥିବା ଭୂତକୁ ତଡ଼ିପାରିଥିଲା !"

"ସେ କାହାଣୀଟି କ'ଣ ?" ରାଜା ପଚାରିଲେ । ଯାତକ ଗପିଲା :

ପୂର୍ବକାଳର କଥା । ଘୋର ବନସ୍ତରେ ରହୁଥିଲା ଚଣ୍ଡକର୍ମା ନାମକ ଭୂତ । ଥରେ ଜଣେ ପଥିକ-ବ୍ରାହ୍ମଣର କାନ୍ଧ ଉପରେ ବସି-ଯାଇ ସେ ହୁକୁମ ଦେଲା, "ଚାଲ, ଆଗକୁ ଚାଲ !"

ବ୍ରାହ୍ମଣ ଅଗତ୍ୟା ଭୂତକୁ ବୋହିଚାଲିଲା । କିଛି ସମୟ ପରେ ସେ କହିଲା, "ଭୂତଶ୍ରେଷ୍ଠ ! ତୁମ ପାଦଯୋଡ଼ିକ କେଡ଼େ କୋମଳ !"

ଭୂତ ଖୁସୀ ହୋଇ କହିଲା, "କୋମଳ ହେବ ନାହିଁ ? ମୁଁ କ'ଣ କେବେ ମାଟିରେ ଚାଲେ ? କେବେ ନୁହେଁ ।"

ବ୍ରାହ୍ମଣ ଏ ଉତ୍ତର ଶୁଣି ଅନୁମାନ କରିନେଲା କି ସେ ଭୂତ ମାଟିରେ ଚାଲିପାରେ ନାହିଁ । କିଛି ହେତୁ ଥିବ । ଭୂତର ସେ ଉତ୍ତର ଭିତରେ ବ୍ରାହ୍ମଣ ନିଜ ମୁକ୍ତିର ସମ୍ଭାବନା ଦେଖିଲା ।

କିଛି ବାଟ ଯିବା ପରେ ଗୋଟିଏ ସରୋବର ପଡ଼ିଲା । ଭୂତ କହିଲା, "ଟିକିଏ ଠିଆ ହୁଅ । ମୁଁ ସ୍ନାନ କରିନିଏ ।" ଏହା କହି ସେ ସରୋବର ଭିତରକୁ ଡେଇଁପଡ଼ିଲା ।

ବ୍ରାହ୍ମଣ ଭାବିଲା, "ସ୍ନାନ କରିସାରି ଇଏ ମୋତେ ଖାଇବ । ବର୍ତ୍ତମାନ ପଳାଇବାହିଁ ମୋ ଆଗରେ ଏକମାତ୍ର ପନ୍ଥା । ଇଏ ତ ଚାଲିପାରିବ ନାହିଁ । ମୋତେ ଅନୁସରଣ କରିବ ବା କିପରି ?"

ଏହା ଭାବି ବ୍ରାହ୍ମଣ ପଳାଇଲା । ସେ ଭୂତ ବାସ୍ତବିକ୍ ଚାଲିବାକୁ ଅକ୍ଷମ ଥିଲା । ତେଣୁ ସେ ବ୍ରାହ୍ମଣକୁ ବାଧା ଦେଇପାରିଲା ନାହିଁ ।





# ଭଲ୍ଲୂକ ମାନ୍ତ୍ରିକ

[ ୨୦ ]

[ମନ୍ତ୍ରଦଣ୍ଡ ପାଇ ଦୁଇ ବୈରାଗୀ ଶିଷ୍ୟ ତାକୁ ମାଟିରେ ଠୁକଉଥିଲେ ଗୋଟିଏ ସୁଡ଼ଙ୍ଗ ଦେଖାଦେଲା । ଭିତରେ ଧନ-ସମ୍ପଦ ଥିବ ବୋଲି ଭାବି ବୈରାଗୀ ଓ ତା' ଶିଷ୍ୟ ଭିତରକୁ ପଶିଲେ । ସେତିକିବେଳେ ଏଣେ ସରୋବର ପାଖରେ ଘାତକଭଲ୍ଲୂକ ତରବାରି ଉଞ୍ଚାଇ ଶିକାରିକୁ ଆକ୍ରମଣ କରିବାକୁ ଉଦ୍ୟତ ହେଲା । ତା'ପରେ···]

ଘାତକଭଲ୍ଲୂକର ଭୟଙ୍କର ଚେହେରା ଓ ତା' ହାତରେ ଝୁଲୁଥିବା କୁଠାର ଦେଖି ଶିକାରି ବୁଝିନେଲା ଯେ ପଳାଇବାର ଚେଷ୍ଟା ବୃଥା । ଆପାଦମସ୍ତକ ଥରଉଠି ସେ ହାତ ଯୋଡ଼ି କହିଲା, "ମହାଶୟ, ଗତ ସାତଦିନ ହେଲା ମୁଁ ଏ ବଣ ଭିତରେ ନାନା ପ୍ରକାରର ମଣିଷ ଦେଖିଛି । ଗୋଟାଏ ଭୟଙ୍କର ରାକ୍ଷସ ମଧ୍ୟ ମୋ ଆଖିରେ ପଡ଼ିଛି । କିନ୍ତୁ କାହାରି ସହ ମୁଁ ଗପସପ ହୋଇ ନାହିଁ । ମାୟାମର୍କଟକୁ ମୁଁ ଦେଖି ନାହିଁ, ତେବେ ଲାଲ ବସ୍ତ୍ର ପିନ୍ଧିଥିବା ଜଣେ ଜଟାଧାରୀ 'ଆରେ, ମୋ ଶିଷ୍ୟ ମାୟା-ମର୍କଟ, ଗଲୁ କୁଆଡ଼େ' ବୋଲି ଚିତ୍କାର କରୁଥିବାର ଶୁଣିଛି ।"

ଶିକାରି ତୁଣ୍ଡରୁ ଏତିକି ଶୁଣି ଘାତକଭଲ୍ଲୂକ



ଟିକିଏ ଚକିତ ଦେଖାଗଲା । ତା'ପରେ କୁଠାର ତଳକୁ କରି ସେ କହିଲା "ତୋର ଏ ବିବୃତିରୁ ଆମର କିଛି ଲାଭ ହେବ କି ନାହିଁ ସେ କଥା ରବିବର୍ମା କହିପାରିବେ । ତୁ ରହିଥା । ତୋର କୌଣସି ଭୟ ନାହିଁ ।"

ବଣୁଆ ଟୋକା ଘାତକଭଲ୍ଲୂକକୁ କହିଲା, "ତୁମେ ଏ ଶିକାରୀ କଥାକୁ ବିଶ୍ୱାସ କରୁଛ କିପରି ? ତାନ୍ତ୍ରିକ ଏବଂ ରାକ୍ଷସ ଉଗ୍ରଦଣ୍ଡ ତ ଆମ ସାଥିରେ ରହିଛନ୍ତି । ସେମାନଙ୍କୁ ଇଏ ବା ଦେଖିଲା କିପରି ?

"ମୁଁ ବି ଠିକ୍ ବୁଝିପାରୁ ନାହିଁ । ହୋଇପାରେ, ଆମ ଭଲ୍ଲୂକତାନ୍ତ୍ରିକ ଭଳି ଆଉ କେହି ଜଣେ ବଣରେ ଆସି ପହଞ୍ଚିଛି । ଶିକାରୀ ! ତୁ ଯେଉଁ କପଟ ବୈରାଗୀ ଓ କୌଣସି ସୁଡ଼ଙ୍ଗ କଥା କହୁଥିଲୁ, ସେକଥା ସବିସ୍ତାରେ କହ ।" ଘାତକଭଲ୍ଲୂକ କହିଲା ।

ଶିକାରୀ ସେମାନଙ୍କୁ ସୁଡ଼ଙ୍ଗର ଦ୍ୱାର ଦେଖିବାକୁ ନେଇଗଲା । ସେଠାରେ ମନ୍ତ୍ରଦଣ୍ଡ ସାହାଯ୍ୟରେ ସେମାନେ ଯେଉଁ ଅଲୌକିକ କାଣ୍ଡ ଘଟାଇଥିବାର ସେ ଦେଖିଥିଲା, ସେକଥା ମଧ୍ୟ ବର୍ଣ୍ଣନା କଲା ।

"ଆଚ୍ଛା କହିଲୁ, ଯେଉଁ ଜଳ ଫୁଆର ଉପରକୁ ଉଠିଲା ବୋଲି କହୁଛୁ, ତାହା ତୋର କଳ୍ପନା ନୁହେଁ ତ ?" ଘାତକଭଲ୍ଲୂକ ପଚାରିଲା ।

"କଳ୍ପନା ? ମହାଶୟ, ମୁଁ ସେପରି ଉଦ୍ଭଟ କଳ୍ପନା କରିବାକୁ ଯିବି ବା କାହିଁକି ? ତାହା ଛଡ଼ା ଏ ସ୍ଥାନ ଅଳ୍ପ ସମୟ ପୂର୍ବରୁ ପ୍ଲାବିତ ହୋଇଥିବାର ଆପଣ ବୁଝିପାରୁ ନାହାନ୍ତି ?" ଶିକାରୀ ବିଷାଦ ଭାବରେ କହିଲା ।

"ଆଚ୍ଛା, ସେମାନେ କୌଣସି ଯନ୍ତ୍ର ଦ୍ୱାରା ସେଭଳି ଘଟଣା କରି ନ ଥିଲେ ତ ?" ଘାତକଭଲ୍ଲୂକ ପୁଣି ପଚାରିଲା ।

"ସେହି କଥା ତ କହୁଛି, ଆଜ୍ଞା ! ସେମାନଙ୍କ ହାତରେ ଯନ୍ତ୍ର ନିଶ୍ଚେ ଥିଲା । କିନ୍ତୁ ତାହା ଗୋଟାଏ ଦଣ୍ଡ ଛଡ଼ା ଆଉ କିଛି ନୁହେଁ । ଗୋଟାଏ ବାଡ଼ିରେ ଏମିତି ଯାଦୁ ଗୁଣ ଥାଏ,



ସେକଥା ନ ଦେଖିଲେ କି ମୁଁ ବିଶ୍ୱାସ କରି-ଥାନ୍ତି !" ଶିକାରୀ କହିଲା ।

ତାହା ଯେ ଭଲ୍ଲୂକ ତାନ୍ତ୍ରିକ ହାତରୁ ମାୟା-ମର୍କଟ ଛଡ଼େଇ ନେଇଥିବା ମନ୍ତ୍ରଦଣ୍ଡ ଛଡ଼ା ଅନ୍ୟ କିଛି ନୁହେଁ, ସେକଥା ଘାତକଭଲ୍ଲୂକ ବୁଝିଗଲା । କେବଳ ବୈରାଗୀଙ୍କ ହାତକୁ ତାହା କିପରି ଆସିଲା, ସେକଥା ସେ ବୁଝିପାରୁ ନ ଥାଏ ।

ରବିବର୍ମାକୁ ଡାକିବା ପାଇଁ ଘାତକଭଲ୍ଲୂକ ବାହାରିବା ବେଳକୁହିଁ ଘୋଡ଼ା ଚଢ଼ି ରବିବର୍ମା ସେଠାରେ ପହଞ୍ଚିଗଲେ । ସେ କହିଲେ, "ଭଲ୍ଲୂକ, ରାତି ବିତାଇବା ପାଇଁ ଏ ସ୍ଥାନ ବେଶ୍ ଅନୁକୂଳ ମନେ ହେଉଛି ।"

ଘାତକଭଲ୍ଲୂକ ରବିବର୍ମା ପାଖକୁ ଯାଇ କହିଲା, "ମହାଶୟ, ରାତି ବିତାଇବା କଥା ପରେ । ବର୍ତ୍ତମାନ ଏ ଶିକାରୀ ପାଖରୁ ଯେଉଁ ଆଶ୍ଚର୍ଯ୍ୟ କଥାମାନ ଶୁଣିଲି, ଆଗେ ତୁମେ ତାହା ଶୁଣିନିଅ ।" ଘାତକଭଲ୍ଲୂକ କହିଲା ।

ରବିବର୍ମାଙ୍କ ଅବଗତି ନିମନ୍ତେ ଶିକାରୀ ଯାହା ଦେଖିଥିଲା—ମନ୍ତ୍ରଦଣ୍ଡର କରାମତିରେ ସୁଡ଼ଙ୍ଗ ଖୋଲିଯିବା ପର୍ଯ୍ୟନ୍ତ—ସବୁକଥା ଗପିଗଲା ।

ରବିବର୍ମା କୌତୂହଳୀ ହୋଇ ସୁଡ଼ଙ୍ଗର ଦ୍ୱାର ଦେଶରେ ପହଞ୍ଚିଲେ ଓ ସାବଧାନତା ସହକାରେ ଥରେ ଭିତରକୁ ଦୃଷ୍ଟିପାତ କରି ଓହ୍ଲାଇବାକୁ ଲାଗିଲେ । ପାହାଚ ତଳେ ପହଞ୍ଚିବା ଉତ୍ତାରୁ ଦୂରରୁ ଆଲୁଅ ତଥା କେତୋଟି କଳା କଳା ମୂର୍ତ୍ତି ତାଙ୍କ ଆଡ଼କୁ ଆସୁଥିବାର ଦେଖିଲେ ।

ପାତାଳପୁରୀର ଭୂତ ଭଳି ଦିଶୁଥିବା ସେ ଆଗନ୍ତୁକମାନଙ୍କୁ ଟିକିଏ ଲକ୍ଷ୍ୟ କଲେ ରବିବର୍ମା । ସେମାନେ ଅଗ୍ରସର ହେଉଥିଲେ । ଯାହା କରି-ବାର, ତାହା ଶୀଘ୍ର କରିବା ଆବଶ୍ୟକ ।

ରବିବର୍ମା ତତ୍‌କ୍ଷଣାତ୍ ଉପରକୁ ଉଠିଆସି ଘାତକଭଲ୍ଲୂକକୁ କହିଲେ, "ଭଲ୍ଲୂକ ! ତୁମେ ତୁମର ବଣୁଆ ଟୋକାକୁ ଏଠାରେ ଜଗାଇ ତାନ୍ତ୍ରିକଙ୍କୁ ଯାଇ ଖବର ଦିଅ । ଏହା ଭିତରେ



ମୁଁ ସୁଡ଼ଙ୍ଗରେ ପ୍ରବେଶ କରି ବୈରାଗୀ ହାତରୁ ମନ୍ତ୍ରଦଣ୍ଡଟି ହାସଲ କରିବାର ଚେଷ୍ଟା କରିବି ।"

ଘାତକଭଲ୍ଲୂକ ଗୁରୁପାହୁଣ୍ଡ ଆଗକୁ ଯାଇ ରେକିଯାଇ କହିଲା, "ରୁଦ୍ରବର୍ମା ! ଆଜ୍ଞା, ବୈରାଗୀଙ୍କ ହାତରେ ଶକ୍ତିଶାଳୀ ମନ୍ତ୍ରଦଣ୍ଡ ରହିଛି, ସେକଥା ଯେମିତି ଆପଣ ଭୁଲିଯିବେ ନାହିଁ ।

ରୁଦ୍ରବର୍ମା ତରବାରି ନିଷ୍କାସିତ କରି କହିଲେ, "ଭଲ୍ଲୂକ, ତୁମ୍ଭର ଏ ଅସ୍ତ୍ର ମହାଶକ୍ତିଶାଳୀ କି ନା କହିପାରିବି ନାହିଁ, ତେବେ ମୋର ବିଶ୍ୱାସ ଏହାର କରାମତି କିଛି କମ୍ ନୁହେଁ । ମୋ ପିତା ଏହା ବଳରେ ଆଜିର ରାଜା ଜିତକେତୁଙ୍କର ପିତାଙ୍କର ଅନେକ ଶତ୍ରୁଙ୍କୁ ବିନାଶ କରିଥିଲେ । ଅବସ୍ଥା ବଦଳି ଯାଇଛି । ଆଜି ଯଦି ଏ ତରବାରି ମୁଣ୍ଡ କାଟିବାରେ ବ୍ୟବହାର ହେବ, ତେବେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।"

ବରଗଛ ତଳେ ପଦଚାରଣା କରୁଥିବା ଶିକାରୀ ପଚାରିଲା, "ହଜୁର ! ମୁଁ ମୋ ନିଜ ବାଟରେ ଯିବି ତ ?"

ଘାତକଭଲ୍ଲୂକର ସେବକ ବଣୁଆ ଟୋକା ଶିକାରୀ ପାଖକୁ ଯାଇ କହିଲା, "ଶୁଣ, ତୁ ଯେପରି ବନବାସୀ, ମୁଁ ମଧ୍ୟ ସେହିପରି ବନବାସୀ । ପେଟ ପୋଷିବା ସକାଶେ ଆମକୁ କମ୍ କଷ୍ଟ କରିବାକୁ ପଡ଼େ ନାହିଁ । ମୁଁ ଯେମିତି ଜଣେ ବଳବାନ୍ ଲୋକଙ୍କ ଆଶ୍ରୟ ଖୋଜିନେଇଛି, ତୁ ବି ସେମିତି ନ କରିବୁ କିଆଁ ? ଜିତକେତୁର ରାଜୁତି ବେଶୀ କାଳ ତିଷ୍ଠିବ ନାହିଁ ବୋଲି ମୋର ବିଶ୍ୱାସ । ଯିଏ ରାଜା ହେବାର ସମ୍ଭାବନା, ତା' ପକ୍ଷରେ ରହିଥିଲେ ସିନା ଆମକୁ ଭବିଷ୍ୟତରେ ଦରବାରରେ ସମ୍ମାନଜନକ ସ୍ଥାନ ମିଳିବ !"

ଶିକାରୀ ବଣୁଆ ଟୋକା ଆଡ଼କୁ ଆଶାପୂର୍ଣ୍ଣ ଆଖିରେ ଅନାଇ କହିଲା, "ଭାଇ ତୁମେ ଯାହା କହିଲ ତାହା ଭଲ କଥା ବୋଲି ବୁଝୁଛି । ଜିତକେତୁ ଅବଶ୍ୟ ଅଯୋଗ୍ୟ ରାଜା । କିନ୍ତୁ ତାଙ୍କୁ ହଟାଇ ରାଜା ହେବା ଭଳି ତାକତ କାହାର ଅଛି ?"



ବଣୁଆ ଟୋକା ସୁଡ଼ଙ୍ଗ ଭିତରେ ପଶୁଥିବା ରବିବର୍ମାଙ୍କୁ ଦେଖାଇ କହିଲା, "ଏଇ ହେଲେ ରବିବର୍ମା । ରାଜା ଜିତକେତୁ ଅନ୍ୟାୟରେ ଏହାଙ୍କୁ ଅପମାନ ଦେଇଛନ୍ତି । ପୁଣି ଏହାଙ୍କ ମୁଣ୍ଡ କାଟି ପାଇଁ ଆଦେଶ ମଧ୍ୟ ଦେଇଥିଲା । ନିଜ ବଳରେ ଇଏ ବର୍ତ୍ତିଗଲେ । ବର୍ତ୍ତମାନ ରାଜା ଉପରେ ପ୍ରତିଶୋଧ ନେବାକୁ ସେ ବଦ୍ଧ-ପରିକର ।"

"ଭାଇ' ମୁଁ ତୁମ ସାଥିରେ ରହିବି !" ଏହା କହି ଶିକାରୀ ବଣୁଆ ଟୋକାକୁ ଆଲିଙ୍ଗନ କଲା ।

ସୁଡ଼ଙ୍ଗମାର୍ଗରେ ରବିବର୍ମା କିଛିଦୂର ଅଗ୍ରସର ହୋଇ ବିପରୀତ ଦିଗରୁ ଆସୁଥିବା ବୈରାଗୀ-ମାନଙ୍କୁ ଲକ୍ଷ୍ୟ କରି ହୁକୁମ୍ ଦେଲେ, "ସେଇଠି ରହିଯାଅ !"

ବୈରାଗୀମାନେ ଚମକିପଡ଼ି ଠିଆ ହୋଇ ରହିଲେ । ସାନ ଶିଷ୍ୟ କହିଲା, "ଗୁରୁଜୀ ! ଆମେ ଏ ଅଞ୍ଚଳର ଯକ୍ଷ-ଦେବତା ହାବୁଡ଼ରେ ପଡ଼ିଗଲୁ ! ଆଉ ରକ୍ଷା ନାହିଁ ।"

ବୈରାଗୀଗୁରୁ ଆଗନ୍ତୁକ ଆଡ଼କୁ ତୀବ୍ର ଦୃଷ୍ଟି-ପାତ କରି କହିଲା, "ମୁଁ ଶୁଣିଛି ଯକ୍ଷ ଦେଖିବାକୁ ଟେଡ଼ା ହୋଇଥାଏ । ତା' କଣ୍ଠସ୍ୱର ଧୀର ହୁଏ । ଏ ଲୋକ କଦାପି ଯକ୍ଷ ନୁହେଁ । ସାଧାରଣ ମଣିଷ । ଅବଶ୍ୟ ଖୁବ୍ ତେଜୀୟାନ ମନେ ହେଉଛି । ତେବେ ମନ୍ତ୍ରଦଣ୍ଡ ସାହାଯ୍ୟରେ ଏହାକୁ ଦମନ କରିବା କଠିନ ହେବ ନାହିଁ ।"

ବୈରାଗୀଗୁରୁ ଏତିକି କହିସାରିବା ବେଳକୁ ରବିବର୍ମା ତା' ପାଖରେ ପହଞ୍ଚିଯାଇଥିଲେ । ନିଜ ତରବାରିର ଚମକ ଦେଖି ଦୁଇ ଶିଷ୍ୟ ଗୁରୁଙ୍କୁ ଚୁପି ଚୁପି କହିଲେ, "ଗୁରୁଜୀ ! ଆମକୁ ବଡ଼ ଡର ଲାଗୁଛି । ଆପଣ ତୁରନ୍ତ ମନ୍ତ୍ରଦ୍ୱାରା ଏ ଲୋକଙ୍କୁ ଭସ୍ମ କରିଦିଅନ୍ତୁ ।"

ଗୁରୁବୈରାଗୀଙ୍କ ଅବସ୍ଥା ସେତେବେଳକୁ ବିଶେଷ ଭଲ ନୁହେଁ । ସେ ମନ୍ତ୍ରଦଣ୍ଡ ଉଠାଇ କିଛି ଉଚ୍ଚାରଣ କଲା । କିନ୍ତୁ ଫଳ କିଛି ହେଲା ନାହିଁ । ସେ ଭୟରେ ଥରିବାକୁ ଲାଗିଲା ।



ରବିବର୍ମା ନିଜ ତରବାରିର ମୁନ ତା' ଛାତିରେ ଥୋଇ କହିଲେ, "ଶୁଣ, ସେ ମନ୍ତ୍ରଦଣ୍ଡ ମୋର । ମୋ ଛଡ଼ା ଆଉ କାହାରି ନିର୍ଦ୍ଦେଶରେ ସେ କାମ କରିବ ନାହିଁ । ତାକୁ ଫେରାଇ ଦେବୁ ନା ମରିବୁ ?"

ବୈରାଗୀଗୁରୁ ଇତସ୍ତତଃ କରୁଥାଏ । କିନ୍ତୁ ତା'ର ଦୁଇ ଶିଷ୍ୟ ତାକୁ କହିଲେ, "ଗୁରୁ ! ବିଳମ୍ବ ନ କର ତା' ମନ୍ତ୍ରଦଣ୍ଡ ତାକୁ ଫେରାଇ ଦିଅନ୍ତୁ । ମନେହୁଏ ଏହାର ଯେତିକି କରାମତି ଥିଲା, ତାହା ଶେଷ ହେଲାଣି । ଏଣିକି ଏହାକୁ ରଖିବା ଅର୍ଥ ଆମ ଜୀବନ ବିପନ୍ନ କରିବା ।"

"ଚୁପ୍ !" ବୈରାଗୀଗୁରୁ ତା' ଶିଷ୍ୟ ଦୁହିଁଙ୍କୁ ଧମକ ଦେଲା । କିନ୍ତୁ ତା'ପରେ ରବିବର୍ମାଙ୍କୁ କହିଲା, "ବତ୍ସ ! ତୁମ ସାହସରେ ମୁଁ ପ୍ରୀତ ହେଲି । ନିଅ ଏ ମନ୍ତ୍ରଦଣ୍ଡ । ଏହାକୁ ନେଇ ଜିତକେତୁ ରାଜାଙ୍କୁ ଦେଲେ ସେ ତା' ପୋଷ୍ୟା କନ୍ୟା ସହ ତୁମର ବିବାହ ସମ୍ପାଦନ କରିବ । ଯାଅ, ଶହେ ବର୍ଷ ସୁଖରେ ରୁହ । ମୁଁ ଆଶୀର୍ବାଦ ଦେଲି ।"

ଏହା କହି ବୈରାଗୀଗୁରୁ ମନ୍ତ୍ରଦଣ୍ଡ ରବି-ବର୍ମାଙ୍କୁ ଦେଇଦେଲା । ତା'ପରେ ସେ ଆଗକୁ ନା ପଛକୁ ଯିବେ ସେକଥା ଭାବୁଛନ୍ତି, ବୈରାଗୀ-ଗୁରୁ ପୁଣି କହିଲା, "ବତ୍ସ ! ଏଠାରେ ଥିବା ସମ୍ପତ୍ତିରୁ ଯଦି ଆମକୁ କିଛି ଦିଅନ୍ତ, ତେବେ ତୁମର ମଙ୍ଗଳ ହୁଅନ୍ତା ।"

ରବିବର୍ମା ଏଣେତେଣେ ଅନାଇ କହିଲେ, "ବୈରାଗୀ ! ତୁମେ ବୋଧହୁଏ କଳ୍ପନା କରୁଛ କି ଏ ସୁଡ଼ଙ୍ଗ ଭିତରେ ଧନସମ୍ପଦ ଲୁଚି-ରହିଛି । ମୋର ସେପରି ମନେ ହେଉ ନାହିଁ । ମୁଁ ଭାବୁଛି, ବିପଦବେଳେ ଏ ସୁଡ଼ଙ୍ଗ ଦେଇ ପଳାୟନ କରିବା ନିମନ୍ତେ କୌଣସି ରାଜା ଏହାକୁ ତିଆରି କରିଛି । ତେବେ ତୁମେ ମୋ ସାଥିରେ ଆଗକୁ ଆସିପାର । ସମ୍ପତ୍ତି କିଛି ମିଳିଲେ ତୁମେ ନେବ । ମୋର ଆପତ୍ତି ନାହିଁ ।"

"ହେ ବୀର ଯୁବକ ! ତୁମ ପ୍ରସ୍ତାବରେ ଆମେ ସମ୍ମତ । ତୁମେ ଆଗେଇ ଚାଲ । ଆମେ ତୁମ

ପଛରେ ଯିବୁ ।" କହିଲା ବୈରାଗୀଗୁରୁ ।

ସେମାନେ ଅଗ୍ରସର ହେଲେ । କିଛି ଦୂର ଯିବା ପରେ ସୁଡ଼ଙ୍ଗ ପଥ ଶେଷ ହୋଇଥିବାର ଦେଖାଗଲା । ତେବେ ଯେଉଁ ନିଆଁ ଭଳି ଆଲୁଅ ଦିଶୁଥିଲା, ତାହା ପଥର ସେପଟରୁ ଆସୁଥିଲା ।

ରବିବର୍ମା ବୈରାଗୀମାନଙ୍କୁ କହିଲେ, "ଏଇ ଯେଉଁ ଆଲୁଅ ଦିଶୁଛି, ଏହା ରାଜପ୍ରାସାଦ ଭିତରୁ ଆସୁଛି ବୋଲି ମୋର ଧାରଣା । ଯଦି ନିଃଶବ୍ଦରେ ଏ ପଥରଖଣ୍ଡିକ ଘୁଞ୍ଚାଇହୁଅନ୍ତା, ତେବେ ପ୍ରାସାଦର କେଉଁ ଅଂଶରେ ଆମେ ପହଞ୍ଚିପାରିବା ତା' ବୁଝିହୁଅନ୍ତା ।"



ସମସ୍ତେ ହାତ ଲଗାଇଲେ । ଅଳ୍ପସମୟ ଭିତରେ ସେମାନେ ପଥରଖଣ୍ଡିକ ଘୁଞ୍ଚାଇ-ପାରିଲେ । ସଙ୍ଗେ ସଙ୍ଗେ ସୂର୍ଯ୍ୟାଲୋକ ସୁଡ଼ଙ୍ଗ ଭିତରକୁ ପଶିଆସିଲା । ରବିବର୍ମା ଉପରକୁ ଉଠିଗଲେ । ପଛେ ପଛେ ବୈରାଗୀମାନେ ମଧ୍ୟ ଗଲେ । ସେମାନେ ଗୋଟାଏ ଉଦ୍ୟାନ ଭିତରେ ପହଞ୍ଚିଲେ । ବୈରାଗୀମାନେ କହିଲେ, "ଆହା, କେଡ଼େ ସୁନ୍ଦର ଉଦ୍ୟାନ । ମନେହୁଏ, ଏହା ରାଜା ଜିତକେତୁଙ୍କ ଉଦ୍ୟାନ !"

"ଏମିତି ବଡ଼ ପାଟିରେ କଥା କୁହ ନାହିଁ । ଆମେ ବିପଜ୍ଜନକ ଅବସ୍ଥାରେ ରହିଛୁ । ଯଦି ରାଜା ଜିତକେତୁର କୌଣସି କର୍ମଚାରୀ ଆମକୁ ଦେଖି ପକାଇବ, ତେବେ ଅବସ୍ଥା କ'ଣ ହେବ ବୁଝୁଛ ତ ? ଅବଶ୍ୟ ପ୍ରାଣ ଥିବା ଯାଏ ମୁଁ ବନ୍ଦୀ ହେବ ନାହିଁ । କିନ୍ତୁ ତୁମ୍ଭମାନଙ୍କ କଥା କ'ଣ ?"

"ବତ୍ସ ! ସତ କହିଲେ ଆମେ ମରିବାକୁ ବା ଲଢ଼ିବାକୁ ପ୍ରସ୍ତୁତ ନୋହୁଁ । ପ୍ରାଣ ପ୍ରତି ମୋହ ନ ଥିଲେ କି ଆମେ ଧନ ଲୋଭରେ ସୁଡ଼ଙ୍ଗରେ ପଶିଥା'ନ୍ତୁ ? ସୁଡ଼ଙ୍ଗ ଭିତରେ ଧନସମ୍ପଦ ନାହିଁ ବୋଲି ଆମେ ବୁଝିଗଲୁଣି । ଏଣିକି ଆପଣଙ୍କ ଅନୁମତି ହେଲେ ଆମେ ଆମ ନିଜ ବାଟରେ ଯିବୁ ।" ବୈରାଗୀଗୁରୁ ଶଙ୍କିତ ଭାବରେ କହିଲା ।

ସେମାନେ ଚାଲିଯିବାକୁ ଉଦ୍ୟତ ହେଉଛନ୍ତି, ସେତିକିବେଳେ ଉଦ୍ୟାନ ଭିତରକୁ ରାଜା ଜିତ-

କେତୁ ପଶିଆସିବାର ଦେଖାଗଲା । ରବିବର୍ମା ସଙ୍ଗେ ସଙ୍ଗେ ଫୁଲଗଛ ଉହାଡ଼ରେ ଲୁଚିଯାଇ ବୈରାଗୀମାନଙ୍କୁ କହିଲେ, "ତୁମ୍ଭମାନଙ୍କର ଭୟ ନାହିଁ । ଯଦି ରାଜା ଆଖିରେ ପଡ଼ିଯିବ, କହିବ ସହରର କୌଣସି ବେପାରୀ ହାତରେ ମନ୍ତ୍ରଦଣ୍ଡ ପଡ଼ିଛି, ସେହି ଖବର ଦେବା ନିମନ୍ତେ ତୁମ୍ଭେ-ମାନେ ଏଠାକୁ ଆସିଛ । ତେଣିକି ଦେଖାଯାଉ କ'ଣ ହେଉଛି ।"

ରବିବର୍ମା ତାଙ୍କ ପରାମର୍ଶ ଦେଇସାରିବା ମାତ୍ରେ ଶଙ୍ଖଧ୍ୱନି ଶୁଣାଗଲା । ମାର୍ତ୍ତ୍ୟମର୍କଟ ଖୁବ୍ ଉତ୍ସାହରେ କହିଲା, "ତାନ୍ତ୍ରିକଗୁରୁଙ୍କର ଜୟ ହେଉ ! ମହାରାଜ ! ଏ ଶଙ୍ଖଧ୍ୱନି ଉଆସ ଭିତରୁ ଆସୁଛି ନା ବାହାରୁ ?"

ମାର୍ତ୍ତ୍ୟମର୍କଟ ଗଛଚଢ଼ି ଶଙ୍ଖଧ୍ୱନିର ଉତ୍ସ ନିରୂପଣ କରିବାକୁ ଚେଷ୍ଟା କରୁଥିଲା । ତା'ପରେ ଠିକ୍ ଅବତରଣ କଲା ବେଳକୁ ବୈରାଗୀମାନଙ୍କୁ ଦେଖିପକାଇଲା ।

"ମହାରାଜ ! ଆପଣଙ୍କ ଉଦ୍ୟାନରେ କ'ଣ ବୈରାଗୀମାନେ ମଠ କଲେଣି ! ଆପଣ ଏମାନଙ୍କୁ ବନ୍ଦୀ କରନ୍ତୁ । ବାହାରକୁ ଯିବାକୁ ଦିଅନ୍ତୁ ନାହିଁ ।" ମାର୍ତ୍ତ୍ୟମର୍କଟ ଏହା କହିସାରି ତଳକୁ ଡେଇଁପଡ଼ିଲା ।

ରାଜା ଜୋରକେରୁ ତାଳି ବଜାଇ ସେବକ-ମାନଙ୍କୁ ଆହ୍ୱାନ କଲେ । ତା'ପରେ ବୈରାଗୀ-ମାନଙ୍କ ଆଡ଼କୁ ଅଗ୍ରସର ହେଲେ ଓ କଠୋର କଣ୍ଠରେ ପଚାରିଲେ, "କିଏ ତୁମ୍ଭେମାନେ ? କାହା ଅନୁମତି ନେଇ ଉଦ୍ୟାନ ଭିତରେ ପଶିଛ ?"

ଦୁଇ ଶିଷ୍ୟଙ୍କ ପାଟିରୁ କଥା ବାହାରିଲା ନାହିଁ । ସେମାନେ ଥରୁଥା'ନ୍ତି ।

ବୈରାଗୀଗୁରୁ ଦୁଇ ହାତ ଉପରକୁ ଉଠାଇ ଖାଲି ଏତିକି କହିଲା : ମନ୍ତ୍ରଦଣ୍ଡ ! ଶ୍ୟାମଗୁପ୍ତ ! ମନ୍ତ୍ରଦଣ୍ଡ···ଶ୍ୟାମଗୁପ୍ତ !"

(କ୍ରମଶଃ)





# କର୍ତ୍ତବ୍ୟ ପାଳନ ?

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷ ପାଖକୁ ଲେଉଟି ଆସିଲେ ଏବଂ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ବର୍ଷା ରାତି, ଘନ ଘନ ବିଜୁଳି ଓ ବଜ୍ର ସମେତ ଅଶରୀରୀମାନଙ୍କ ଅଟ୍ଟହାସ୍ୟ ପ୍ରତି ଭ୍ରୂକ୍ଷେପ ନ କରି ସେ ଶବଟିକୁ କାନ୍ଧରେ ପକାଇ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା : "ରାଜା ! ହୋଇପାରେ, ତୁମେ କୌଣସି ଉଚ୍ଚ କର୍ତ୍ତବ୍ୟ ପାଳନ କରିବା ସକାଶେ ଏଭଳି ଶ୍ରମ ସ୍ୱୀକାର କରୁଛ । କିନ୍ତୁ ଖାଲି କର୍ତ୍ତବ୍ୟବୋଧ ଦ୍ୱାରା ଉଦ୍‌ବୁଦ୍ଧ ହେଲେ ଚଳିବ ନାହିଁ । ତାକୁ ପାଳନ କଲି ଭଳି ସାମର୍ଥ୍ୟ ମଧ୍ୟ ଥିବା ଦରକାର । ନ ହେଲେ ବିଡ଼ମ୍ବନାହିଁ ସାର ହେବ । ଗୋଟାଏ କାହାଣୀ କହୁଛି, ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।"

ବେତାଳ ଗପିଲା : ବହୁ ଦିନ ତଳର କଥା । ଶେଖର ଥିଲା ବିଦେହ ରାଜଦରବାରରେ ନିଯୁକ୍ତ



ଜଣେ ରାଜକର୍ମଚାରୀଙ୍କ ପୁତ୍ର । ବିଦେହ ରାଜାଙ୍କ ପୁଅର ନାମ ବିଜୟ । ଶେଖର ଓ ବିଜୟ ପରସ୍ପର ଅନ୍ତରଙ୍ଗ ବନ୍ଧୁ ଥିଲେ । ଦୁହେଁ ଏକା ଗୁରୁ ପାଖରେ ବିଦ୍ୟାଲାଭ କରିଥିଲେ । ବିଜୟ ରାଜପୁତ୍ର ହେଲେ ମଧ୍ୟ ଶେଖରକୁ ନିଜର ସମକକ୍ଷ ଭଳି ଦେଖୁଥିଲେ ।

ଶେଖରର ପିତା ହଠାତ୍ ଏକ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ହେଲେ । ମୃତ୍ୟୁ ସମୟ ନିକଟ ହେବାର ଜାଣି ସେ ପୁତ୍ରକୁ ଡାକି କହିଲେ, "ମୋର ଗୋଟିଏ ଅନ୍ତିମ ଇଚ୍ଛା ଅଛି । ତୁ ଯଦି ତାକୁ ପୂରଣ କରିବୁ, ତେବେ ମୃତ୍ୟୁ ପରେ ମୋର ଆତ୍ମା ଶାନ୍ତି ପାଇବ । ଜବାବ ଦେ ।"

ଶେଖର କହିଲା, "ପିତଃ ! ଆପଣଙ୍କ ଇଚ୍ଛା ପୂରଣ କରି ନ ପାରିଲେ ମୋର ଅଯୋଗ୍ୟତାହିଁ ପ୍ରମାଣିତ ହେବ । କ'ଣ ଆପଣଙ୍କ ଇଚ୍ଛା ।"

"ତୁ ବିଦେହର ରାଜବଂଶ ଯେପରି ଲୁପ୍ତ ହେବ ସେଥିର ବ୍ୟବସ୍ଥା କରିବୁ ।" ପିତା କଠୋର କଣ୍ଠରେ କହିଲେ ।

ଶେଖର ଚମକିପଡ଼ିଲା ଓ କହିଲା, ପିତଃ ! ଆପଣ କହୁଛନ୍ତି କ'ଣ ?"

"ମୁଁ ଯଥାର୍ଥ ନିର୍ଦ୍ଦେଶ ଦେଇଛି । ଥରେ ରାଜା ମୋତେ ଦରବାରରେ ଅପମାନ ଦେଇଥିଲେ । ସେତିକିବେଳେ ମୁଁ ଏ କାମ କରିବାର ଶପଥ ନେଇଥିଲି । କିନ୍ତୁ ହଠାତ୍ ବ୍ୟାଧି ଯୋଗୁ ମୋର ଯୋଜନା ବ୍ୟର୍ଥ ହେଲା । ପୁତ୍ର ହିସାବରେ ମୋର ଅପୂର୍ଣ୍ଣ ଇଚ୍ଛା ପୂର୍ଣ୍ଣ କରିବା ତୋର ପରମ କର୍ତ୍ତବ୍ୟ । ମୋତେ ଜବାବ ଦେ । ନ ହେଲେ ମୁଁ ଶାନ୍ତିରେ ମରିପାରିବି ନାହିଁ ।" ପିତା କହିଲେ ।

ଶେଖର ଟିକିଏ ଦୋଦୋପାଞ୍ଚ ହୋଇ, ନିଜ ପିତାଙ୍କର କରୁଣ ଅବସ୍ଥା ଦେଖି, ତାଙ୍କ ଇଚ୍ଛା ପୂରଣ କରିବାର ଶପଥ ନେଲା । ପିତାଙ୍କ ମୁହଁରେ ହସ ଫୁଟିଲା । ପରେ ପରେ ସେ ମରିଗଲେ ।

ପିତାଙ୍କ ମୃତ୍ୟୁରେ ରାଜଦରବାରରେ ତାଙ୍କର ଶୂନ୍ୟସ୍ଥାନଟି ଶେଖରକୁ ମିଳିଲା । କିଛି ଦିନ ପରେ ବିଦେହର ରାଜା ମରିଗଲେ । ରାଜକୁମାର ବିଜୟ ସିଂହାସନ ଆରୋହଣ କଲେ ।

ଶେଖର ଜଣେ କର୍ମଚାରୀ ମାତ୍ର ହେଲେ ମଧ୍ୟ ରାଜା ବିଜୟ ତାକୁ ପୂର୍ବବତ୍ ମିତ୍ର ଭାବରେହିଁ ଦେଖୁଥାନ୍ତି । ବିଶେଷତଃ ରାଜଦରବାର ଛୁଡ଼ି

ବାହାରେ ବୁଲିବାକୁ ବା ଶିକାର କରିବାକୁ ଗଲାବେଳେ ରାଜା ବିଜୟ ଶେଖରକୁ କେବଳ ଯେ ସାଥିରେ ନେଇ ଯାଉଥା'ନ୍ତି, ତାହା ନୁହେଁ, ନିଜେ ଯେପରି ଚଳୁଥାନ୍ତି, ଶେଖରଙ୍କ ପାଇଁ ମଧ୍ୟ ସେହିଭଳି ସୁବିଧା କରିଦେଉଥାନ୍ତି ।

କିନ୍ତୁ ଶେଖର କିପରି ନିଜ ଶପଥ ଅନୁସାରେ କାମ କରିବ, ସେହି ଚିନ୍ତାରେ ଡୁବିରହିଥାଏ । ବିଜୟଙ୍କର କୌଣସି ଭାଇଭଉଣୀ ନ ଥାନ୍ତି । ବିଜୟ ବିବାହ ମଧ୍ୟ କରି ନ ଥାନ୍ତି । ଅତଏବ ଏକୁଟିଆ ବିଜୟଙ୍କୁ ହତ୍ୟା କରିପାରିଲେହିଁ ରାଜବଂଶ ଲୁପ୍ତ ହେବ । ସେହି କାମଟି କରିବା ପାଇଁ ଶେଖର ଆଗରେ ସୁଯୋଗର ଅଭାବ ନ ଥିଲା । ତେବେ ନିଜ ମନକୁ ଟାଣ କରିବା ନିମନ୍ତେ କିଛିଦିନ ଲାଗିଲା ।

ଥରେ ରାଜା ବିଜୟ ଶିକାର ପାଇଁ ବଣକୁ ଯାଇଥାନ୍ତି । ସାଥିରେ ଯାଇଥାନ୍ତି ଶେଖର । ନିଜ ଦେହରକ୍ଷୀମାନଙ୍କୁ ପଛରେ ପକାଇ ବିଜୟ କିଛି ବାଟ ଅଗ୍ରସର ହେଲେ । ସାଥିରେ ଥିଲେ ଏକମାତ୍ର ଶେଖର । ଗୋଟିଏ ନିର୍ଜନ ସ୍ଥାନରେ ଶେଖର ବିଜୟଙ୍କୁ ପଛରୁ ଛୁରି ମାରିବାକୁ ଉଦ୍ୟତ ହେଲା । କିନ୍ତୁ କାମଟି ହୋଇପାରିବା ପୂର୍ବରୁ ହଠାତ୍ କେଇଜଣ ସୈନ୍ୟ ଅନ୍ୟ ଦିଗରୁ ଆସି ପହଞ୍ଚିଗଲେ । ଶେଖର କ୍ଷାନ୍ତ ହେଲା ।

ଏହାର କିଛି ଦିନ ପରେ ଦୁଇ ବନ୍ଧୁ ଦିନେ ଗୋଟିଏ ପର୍ବତ ଆରୋହଣ କରିଥାନ୍ତି । ପର୍ବତ ସେପଟେ ମନୋହର ଅରଣ୍ୟ । ମଧ୍ୟେ ମଧ୍ୟେ ପର୍ବତଶିଖରରୁ ଅନ୍ୟପଟର ଦୃଶ୍ୟ ଉପଭୋଗ କରିବା ନିମନ୍ତେ ବିଜୟ ଓ ଶେଖର ସେଠାକୁ ଯାଇଥାନ୍ତି । ଶିଖରଦେଶରୁ ପର୍ବତର ଅନ୍ୟ ଦିଗଟି ଏପରି ଢାଲୁ ହୋଇ ଯାଇଥାଏ ଯେ





ତାହାର ଗୋଡ଼ ଖସିଗଲେ ବଞ୍ଚିବାର ତିଳେ ମଧ୍ୟ ସମ୍ଭାବନା ନ ଥିଲା ।

ସେଦିନ ଦୁଇ ବନ୍ଧୁ ପର୍ବତ ଶିଖରରେ ଠିଆ ହୋଇଥାନ୍ତି । ଶେଖର ଦେଖିଲା, ଗୋଟାଏ ଧକ୍କା ଦେଲେ ବିଜୟ ମରିବ ।

ସେ ଧକ୍କା ଦେବାକୁ ଯାଉଛି, ସେତିକବେଳେ ବିଜୟ ବୁଲିପଡ଼ି କହିଲେ, "ଚାଲ, ଫେରିଯିବା ।"

ଏହାପରେ ଦୁହେଁ ଅଦୂରରେ ଖଣ୍ଡିଏ ପଥର ଉପରେ ବିଶ୍ରାମ ପାଇଁ ବସିଥିଲା ବେଳେ ରାଜା ବିଜୟ କହିଲେ, "ବନ୍ଧୁ, ଗତ ରାତିରେ ମୁଁ ଗୋଟାଏ ଅଦ୍ଭୁତ ସ୍ୱପ୍ନ ଦେଖିଛି ।"

"କି ସ୍ୱପ୍ନ ?" ପଚାରିଲା ଶେଖର ।

"ବଣ ଭିତରେ ତୁମେ ମୋ ପିଠିରେ ଛୁରି ମାରିବାକୁ ବସିଛ । ସେଥିରୁ ମୁଁ ବଞ୍ଚିଗଲି ପରେ ମୋତେ ଗୋଡ଼ାଇ ଗୋଡ଼ାଇ ଆସି ଏକ ପର୍ବତ ଉପରୁ ଠେଲିଦେଇ ମାରିଦେବାକୁ ବସିଛ । କି ଭୟଙ୍କର ସ୍ୱପ୍ନ !" ବିଜୟ କହିଲେ ।

ଶେଖରର ମୁହଁ ଫିକା ପଡ଼ିଗଲା । ସେ ଥରିଉଠିଲା ମଧ୍ୟ ।

ହଠାତ୍ ରାଜା ବିଜୟ ଶେଖର ଉପରେ ତୀବ୍ର ଦୃଷ୍ଟି ନିବଦ୍ଧ କରି ପଚାରିଲେ, "ଗତ କେତେଦିନ ହେଲା ତୁମେ ମୋତେ ମାରିବାକୁ ଚେଷ୍ଟା କରୁଛ । ମୁଁ କେବେ ତୁମ ପ୍ରତି କେଉଁ ଅନ୍ୟାୟ କଲି ଯେ ତୁମେ ଏଭଳି ଭୀଷଣ କାମ କରିବାକୁ ନିଷ୍ପତ୍ତି କଲ ? ସବୁ କଥା କହିଯାଅ । ନ ହେଲେ ଛାଡ଼ିବି ନାହିଁ ।"

ଶେଖର ନିଜ ପିତାର ଅନ୍ତିମ ଇଚ୍ଛା ପ୍ରକାଶ କରିଦେଲା ।

"ଓଃ, ତୁମେ ଶ୍ରୀରାମଚନ୍ଦ୍ରଙ୍କ ଭଳି ପିତୃଭକ୍ତ ବୋଲାଇବାର ଚେଷ୍ଟା କରୁଥିଲ । କିନ୍ତୁ ଶ୍ରୀରାମ ପିତୃ ଆଜ୍ଞା ପାଳନ କରିବାକୁ ଯାଇ ନିଜେ ତ୍ୟାଗ କରିଥିଲେ । କାହାର ଅନିଷ୍ଟ କରି ନ ଥିଲେ । ବେଶ୍, ତୁମେ ବର୍ତ୍ତମାନ ମୋତେ ବଧ କରି ତୁମ ପିତାଙ୍କ ଇଚ୍ଛା ପୂର୍ଣ୍ଣ କରିପାର !" ବିଜୟ କହିଲେ ।

ତତ୍‌କ୍ଷଣାତ୍ ଶେଖର ଛୁରି ବାହାର କଲା । କିନ୍ତୁ ସଙ୍ଗେ ସଙ୍ଗେ ବିଜୟ ତରବାରି ବାହାର କରିବାର ଦେଖି ସେ ଶଙ୍କିଗଲା ।

ବିଜୟ ହସି କହିଲେ, "ଦେଖ ଶେଖର, ବିନା ପ୍ରତିରୋଧରେ ଯଦି ମୁଁ ତୁମ ହାତରେ

ମରିବ, ତେବେ ତାହା ଆତ୍ମହତ୍ୟା ଭଳି ହେବ । ଆତ୍ମହତ୍ୟା ଘୋର ପାପ । ମୋତେ ନର୍କରେ ପଡ଼ିବାକୁ ହେବ । ସେପରି ସ୍ଥଳରେ ମୋତେ ହତ୍ୟା କଲେ ତୁମେ ବି ନରକକୁ ଯିବ । ଲଢ଼େଇ କରି ଯିଏ ମରିବ, ସିଏ ଅନ୍ତତଃ ସେଭଳି ପାପରୁ ନିଷ୍କୃତି ପାଇବ ।"

ଶେଖର ଲଢ଼ିବାକୁ ବାଧ୍ୟ ହେଲା । କିନ୍ତୁ ରାଜା ବିଜୟଙ୍କ ବିଚକ୍ଷଣ ତରବାରି ଚାଳନା ଆଗରେ ସିଏ ବା କାହିଁ ତିଷ୍ଠିପାରନ୍ତା ? ତା' ହାତରୁ ଛୁରି ଛିଟିକିଗଲା । ତା'ପରେ ବିଜୟଙ୍କ ଖଡ୍ଗରେ ତା' ମୁଣ୍ଡଟି ମଧ୍ୟ ଗଲା !

ବେତାଳ କାହାଣୀଟି ଶୁଣାଇସାରି, ଟିକିଏ ଚୁପ୍ ରହି ପଚାରିଲା, "ରାଜା ! ବିଜୟ ଶେଖରକୁ ପରାଜିତ କରିସାରିଲା ପରେ ତାକୁ ଛାଡ଼ି ନ ଦେଇ ତା' ମୁଣ୍ଡକାଟ କରିବା କ'ଣ ବନ୍ଧୁ-ଦ୍ରୋହ ନୁହେଁ ? ଶେଖର ତ ରାଜ୍ୟଲୋଭ ବା ସେପରି କୌଣସି ମାମୁଲି କାରଣରୁ ବିଜୟଙ୍କୁ ମାରିବାକୁ ଯାଉ ନ ଥିଲା, ପିତୃ ଆଜ୍ଞା ପାଳନ କରିବା ନିମନ୍ତେ ସେ ସେଭଳି କାମ କରିବାକୁ ଉଦ୍ୟତ ହେଉଥିଲା । ବିଜୟ ତାକୁ ପଦଚ୍ୟୁତ କରିପାରିଥାନ୍ତେ, କାରାରୁଦ୍ଧ କରିପାରିଥାନ୍ତେ । କିନ୍ତୁ ତାହା ନ କରି ତାକୁ ହତ୍ୟା କରିବା ଦ୍ୱାରା ତାଙ୍କ ଭିତରେ ବନ୍ଧୁପ୍ରୀତି ନ ଥିଲା ବୋଲି ପ୍ରମାଣିତ ହେଉନାହିଁ କି ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତୁମ ମସ୍ତକ ହେବ ସ୍କନ୍ଧଚ୍ୟୁତ ।"

ରାଜା ବିକ୍ରମାର୍କ ତତ୍କ୍ଷଣାତ୍ ଉତ୍ତର ଦେଲେ, ବିଜୟ ଶେଖରକୁ ହତ୍ୟା କଲେ ବୋଲି କୁହା-ଯାଇପାରିବ ନାହିଁ । ସେ ତାକୁ ଲଢ଼େଇ



କରି ତାଙ୍କୁ ମାରିବାର ସୁଯୋଗ ଦେଲେ । ସେ ତ ପରାଜିତ ହେଲା । ଯେଉଁ ଶୋଷଣ କାମ ସେ ହାତକୁ ନେଇଥିଲା, ସେଥିରେ ପରାଜୟର ମୂଲ୍ୟ ସ୍ୱରୂପ ତାକୁ ପ୍ରାଣ ଦେବାକୁ ହେଲା । ପ୍ରକୃତରେ ସେ ସିନା ରାଜା ବିଜୟଙ୍କୁ ହତ୍ୟା କରିବାକୁ ଚାହୁଁଥିଲା, ରାଜା ବିଜୟ ତାକୁ ଦଣ୍ଡ ଦେଲେ ମାତ୍ର । ମୃତ୍ୟୁଦଣ୍ଡ ଏବଂ ହତ୍ୟା ଏକ କଥା ହୋଇ ନ ପାରେ ।

"ପିତୃଭକ୍ତି ଯେପରି ଏକ ଆଦର୍ଶ, ବନ୍ଧୁପ୍ରୀତି ଓ କୃତଜ୍ଞତା ମଧ୍ୟ ସେହିପରି ମହାନ୍ ଆଦର୍ଶ । ଏ କ୍ଷେତ୍ରରେ ଗୋଟାଏ କଥା ସ୍ପଷ୍ଟ : ଶେଖରର ପିତା ମହତ୍ ଲୋକ ନ ଥିଲେ । ସିଏ ମୃତ୍ୟୁ ବେଳକୁ କୌଣସି ଉଚ୍ଚ ଚିନ୍ତା ନ କରି ପ୍ରତି-ହିଂସାପରାୟଣ ହୋଇ ଅନ୍ୟର ସର୍ବନାଶ କଥା ଭାବୁଥାଏ, ସେ କ୍ରୂର ବ୍ୟକ୍ତି । ରାଜା ତାକୁ ଅପମାନ କରିଥାଇପାରନ୍ତି । ସେ ପାଇଁ କୌଣସି କାରଣ ନିଶ୍ଚୟ ଥିବ । କିନ୍ତୁ ରାଜା ଯେ ତାକୁ ପଦଚ୍ୟୁତ କରି ନ ଥିଲେ, ପୁଣି ତା' ମୃତ୍ୟୁ ପରେ ପରେ ତାହାର ପଦରେ ତା' ପୁଅକୁ ନିଯୁକ୍ତି ଦେଲେ, ଏସବୁ କ'ଣ ରାଜାଙ୍କ ମହତ୍ତ୍ୱ ପ୍ରତିପାଦିତ କରୁନାହିଁ ? ଶେଖର ଏସବୁ ଭୁଲିଯିବା ଅତ୍ୟନ୍ତ ଅବିବେକତାର ପରିଚୟ ନୁହେଁ କି ? ଯୁକ୍ତି କରାଯାଇପାରେ, ଥରେ ଶପଥ କଲା ପରେ ସେ ତାକୁ ରକ୍ଷା କରିବାକୁ ବାଧ୍ୟ । କିନ୍ତୁ ସେ ପିତାଙ୍କ ପାଖରେ ଶପଥ କଲା କାହିଁକି ? ଯଦି ଅନ୍ୟସବୁ କର୍ତ୍ତବ୍ୟ ଭୁଲି ପାପପୂର୍ଣ୍ଣ ଶପଥ କଲା, ତେବେ ତା'ର ପ୍ରାୟଶ୍ଚିତ୍ତ ନ କରିବ କାହିଁକି ? ଅକୃତଜ୍ଞତା ଭଳି ପାପ ଦ୍ୱିତୀୟ ନାହିଁ ।

"ଶେଖର ଏତେ ହୀନମନା ଯେ ବିଜୟ ତାକୁ ପିତୃଇଚ୍ଛା ପୂର୍ଣ୍ଣ କରିବାକୁ କହିବା ମାତ୍ରେ ସେ ବିଜୟଙ୍କ ଉଦାରତା ଯୋଗୁ ତାଙ୍କ ପାଖରେ କ୍ଷମା ପ୍ରାର୍ଥନା କରିବା ପରିବର୍ତ୍ତେ ତାଙ୍କୁ ମାରିବା ନିମନ୍ତେ ଛୁରି ବାହାର କଲା । ସେଭଳି ଲୋକକୁ ସଙ୍ଗେ ସଙ୍ଗେ ନ ମାରି ବିଜୟ ଯେ ଆହୁରି ଲଢ଼ିବାର ସୁଯୋଗ ଦେଲେ, ଏହା ବିଜୟଙ୍କ ମହତ୍ତ୍ୱହିଁ ପ୍ରମାଣ କରୁଛି ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷଡାଳରେ ଝୁଲିପଡ଼ିଲା । (କଳ୍ପିତ)





# ପୁରୁଣା ଭୂତ, ନୂଆ ଭୂତ

ଗୋଟାଏ ଗାଁରେ ବାସ କରୁଥିଲେ ଏକ କୃଷକ ପରିବାର । ସେମାନଙ୍କର ହଳେ ବଳଦରୁ ଗୋଟାଏ ମରିଯିବା ଫଳରେ ଦିନେ ବାପ ପୁଅ ଦୂରବର୍ତ୍ତୀ ଗୋରୁହାଟରୁ ଗୋଟାଏ ନୂଆ ବଳଦ କିଣିବାକୁ ବାହାରିଲେ ।

ସେମାନେ ଗଲାବେଳେ କୃଷକର ସ୍ତ୍ରୀ ତିନି-ଖଣ୍ଡି ପିଠା ଗୋଟିଏ ପୁଟୁଳିରେ ବାନ୍ଧିଦେଲେ ।

ହାଟରେ ପହଞ୍ଚି ଅନେକ ଦେଖିଶୁଣି ଦୁହେଁ ଗୋଟାଏ ବଳଦ କିଣିଲେ । ସନ୍ଧ୍ୟା ପୂର୍ବରୁ ବଳଦ ସହ ସେମାନେ ଘରମୁହାଁ ଫେରିଲେ ।

ଅଧାବାଟରେ ସେମାନଙ୍କୁ ଭୋକ ଲାଗିଲା । ଗୋଟାଏ କୂଅ ଭିତରକୁ ଓହ୍ଲାଇ ସେମାନେ ମୁହଁହାତ ଧୋଇଲେ ।

ପୁଅ ପୁଟୁଳି ଖୋଲି କହିଲା, "ବାପା, ତୁମେ ଦୁଇଟା ଖାଇବ, ମୁଁ ଖାଇବି ଗୋଟାଏ ।"

ସେ କୂଅରେ ବହୁଦିନରୁ ତିନୋଟି ଭୂତ ରହୁଥିଲେ । ବାପ ପୁଅଙ୍କୁ ଦେଖି ସେଦିନ ସେମାନେ ଚିନ୍ତିଆ ହୋଇଯାଇଥିଲେ । ଏ ଦୁହେଁ କାଳେ ଗୁଣିଆ ହୋଇଥିବେ, ଏହାହିଁ ଥିଲା ତାଙ୍କ ଭୟ ।

ଯେମିତି ଖାଇବା କଥା ଶୁଣିଛନ୍ତି, ତିନିହେଁ କୃଷକ ଆଗକୁ ଆସି କହିଲେ, "ବାବୁ, ଆମକୁ ଖାଅ ନାହିଁ । ଆମେ ବରଂ ତୁମ ଘରକୁ ଯାଇ ତୁମ ଫାଇଫରମାସ୍ ଖଟୁଥିବୁ ।"

କୃଷକ ତତ୍‌କ୍ଷଣାତ୍ ଘଟଣାଟି ଅନ୍ଦାଜ କରି-ନେଇ କହିଲା, "ଭୂତ ଗିଳିବା ଆମର ଅଭ୍ୟାସ । ଏଠାରେ ତୁମେ ତିନିହେଁ ଅଛ ବୋଲି ଜାଣି ଆସିଥିଲୁ । ହେଉ, ହେଲା, ଯଦି ତୁମେ ଆମର ଖାଦ୍ୟ ହେବାକୁ ନ ଚାହଁ, ତେବେ ଚାଲ ଆମ ଘରକୁ; ଖଟିବ ।"

ଶିବ ଶର୍ମା

ଭୂତମାନେ କୃଷକ ସଙ୍ଗରେ ଗଲେ । ସେଦିନଠୁ ତା' ଘର ତଥା କ୍ଷେତବାଡ଼ିର ସବୁ କାମ ସେମାନେ କରନ୍ତି । ଘଣ୍ଟାକର କାମ ଗୋଟାଏ ମିନିଟରେ କରି ଥୋଇଦଅନ୍ତି । କ୍ଷେତରୁ କପା ତୋଳିବା ତାଙ୍କ ମୁଖ୍ୟ କାମ ଥାଏ ।

ସେ ଭୂତମାନଙ୍କର କେତେଜଣ ବନ୍ଧୁଭୂତ ଥିଲେ । ପ୍ରତି ଅମାବାସ୍ୟାରେ ସେମାନେ ସେ କୂଅକୁ ଆସି ଗପସପ ହେଉଥିଲେ । ଏଣିକି ତିନି ଭୂତଙ୍କୁ ନ ପାଇ ସେମାନେ ଅନୁସନ୍ଧାନ କରି ସେମାନଙ୍କର ହାଲ୍ ବୁଝିଲେ ।

ତାଙ୍କ ଭିତରୁ ଜଣେ ଆସି କୃଷକର ଗୋଶାଳା ଭିତରେ ତିନି ପୁରୁଣା ଭୂତଙ୍କ ଠାବ କଲା । ସେମାନେ ବହୁତ ସମୟ ପର୍ଯ୍ୟନ୍ତ ସୁଖ-ଦୁଃଖ ହେଲେ । ନୂଆଭୂତ କହିଲା, "ତୁମ୍ଭେମାନେ କୃଷକକୁ ଏତେ ଡରିବା ଦରକାର ନାହିଁ । ସିଏ କ'ଣ ସତରେ ତୁମ୍ଭମାନଙ୍କୁ ଗିଳିପାରିବ ? ଆଚ୍ଛା, ମୁଁ ଅଦୃଶ୍ୟ ହୋଇ ରହୁଛି । ଦେଖିବା ସେମାନେ ମୋର କ'ଣ କରି ପାରୁଛନ୍ତି ! ଲାଗୁଛି, ସେମାନଙ୍କୁ ମାରିଦେଇହେବ ।

ସେମାନେ କଥାବାର୍ତ୍ତା ହେଉଛନ୍ତି, କୃଷକ ଓ ତା'ପୁଅ ଗୋଶାଳା ଭିତରକୁ ପଶିଆସିଲେ । ଗୋଟାଏ ନୂଆ ମଇଁଷିକୁ କିଛି ରୋଗ ହୋଇଥାଏ । ଲୁହା ତତାଇ ଛେଙ୍କା ଦେଲେ ସେ ରୋଗ ଭଲ ହୁଏ । କୃଷକ ତା' ପୁଅକୁ କହିଲା, "ନୂଆଟା ଦେହରେ ଛେଙ୍କା ଦେବାକୁ ହେବ । ଯା, ଲୁହାକୁ ଭଲ କରି ତତାଇ ଆଣିବୁ ।"

ନୂଆଭୂତର ହଲକ ଶୁଖିଗଲା । ସଙ୍ଗେ ସଙ୍ଗେ ସେ ନିଜ ବାୟବୀୟ ରୂପ ଧରି କୃଷକର ଗୋଡ଼ ତଳେ ପଡ଼ିଯାଇ କହିଲା, "ମୋତେ ସେ କଷ୍ଟ ଦିଅନ୍ତୁ ନାହିଁ । ମୋତେ କପା ଭଣିଆସେ ।"

କୃଷକ ସବୁ ବୁଝିପାରିଲା । କହିଲା, "ହେଉ, କପା ଭଣିବୁ ଓ ପୁରୁଣା ତିନିଟାଙ୍କୁ ବି ଭଣା ଶିଖାଇଦେବୁ ।"

ପୁରୁଣା ଭୂତମାନେ ନୂଆଭୂତକୁ କହିଲେ, "ହଇରେ ଫୁଲଣିଆ, ତୁ ପରା ଆମକୁ ମୁକୁଳାଇନେବାକୁ ଆସିଥିଲୁ ? ନିଜେ ତ କପା ଭଣିବୁ, ଆମକୁ ବି ଭଣାଇମାରିବୁ !"

ନୂଆ ଭୂତ ନିରବ ରହିଲା ।





# ଜନପଦରେ ଏକ ରାକ୍ଷସ

ବିନ୍ଧ୍ୟାଚଳର ଜଙ୍ଗଲରେ ବାସ କରୁଥାଏ କାମରୂପ ନାମକ ଏକ ରାକ୍ଷସ । ସେ ନିଜର ଇଚ୍ଛାଶକ୍ତି ଅନୁସାରେ ରୂପ ଧାରଣ କରିପାରୁଥିଲା । କିଛିଦିନ ପରେ ହଠାତ୍ ତା'ର ଜୀବନ ପ୍ରତି ବିତୃଷ୍ଣା ଜାତ ହେଲା ଓ ସେ ମରିବାକୁ ଇଚ୍ଛା କଲା । କିନ୍ତୁ ସେ ଜାଣି ନ ଥିଲା କିପରି ମରିବ । ପାହାଡ଼ ଉପରୁ ଗୋଡ଼ ବଢ଼ାଇଲେ ତଳକୁ ଲାଗେ । ସମୁଦ୍ର ପାଣି ତ ତା' ପାଇଁ ଆଣ୍ଠୁଏ । ଅନ୍ୟ ରୂପ ନେଲେ ମଧ୍ୟ ମଲାବେଳକୁ ନିଜ ରୂପ ପାଇଯାଏ । ତେଣୁ ସେ ମରିବା ପାଇଁ କୌଣସି ଉପାୟ ପାଇଲା ନାହିଁ ।

ଥରେ ବିନ୍ଧ୍ୟାଚଳକୁ ଜଣେ ତେଜସ୍ୱୀ ଋଷି ଆସିଲେ । ସେ ତାଙ୍କ ତେଜରେ ପ୍ରଭାବିତ ହୋଇ ମଣିଷ ରୂପ ଧରି ଋଷିଙ୍କ ପାଖକୁ ଗଲା ଓ ତାଙ୍କୁ ନିଜର କାହାଣୀ ଶୁଣାଇଲା ।

ଋଷି ରାକ୍ଷସକୁ କହିଲେ, "ଦେଖ, ରାକ୍ଷସମାନଙ୍କର ସମସ୍ତ କ୍ରମେ ଲୋପ ପାଇଯାଉଛନ୍ତି । ତା' ଛଡ଼ା ରାକ୍ଷସ ଜନ୍ମରେ କୌଣସି ସୁଖ ନାହିଁ । ତୁ ଯେ ନିଜ ଜୀବନର ଅନ୍ତ କରିଦେବାକୁ ଚାହୁଁଛୁ ତାହା ଖୁବ୍ ଭଲ କଥା । କିନ୍ତୁ ତୋର ଆୟୁଷ ତ ବହୁତ ଲମ୍ବା । ତେଣୁ ଏବେ ମରିଗଲେ ତୋତେ ପୁଣି ଏକ ରାକ୍ଷସଜନ୍ମ ନେବାକୁ ପଡ଼ିବ । କିନ୍ତୁ ତୁ କି ପ୍ରକାର ଜନ୍ମ ଚାହୁଁଛୁ କହିଲେ ମୁଁ ତୋତେ ଏଇ ଜନ୍ମରୁ ମୁକ୍ତ କରିଦେବି ।"

ବହୁତ ଚିନ୍ତା କରି ମଧ୍ୟ କାମରୂପ ଠିକ୍ କରିପାରିଲା ନାହିଁ ଯେ ଋଷିଙ୍କୁ କେଉଁ ଜନ୍ମ ମାଗିବ । ଶେଷରେ ସେ ଋଷିଙ୍କୁହିଁ ପଚାରିଲା ତାଙ୍କର ମତ କ'ଣ । ଋଷି କହିଲେ, "ସବୁ ଜନ୍ମ ମଧ୍ୟରୁ ମାନବ ଜନ୍ମ ଶ୍ରେଷ୍ଠ । ତୁ ସେଇଆ ମାଗି ନେ ।"

କାମରୂପ ଋଷିଙ୍କ କଥାର ସତ୍ୟତା ଜାଣିବା ପକାଶେ ଋଷିଙ୍କଠାରୁ ବିଦାୟ ନେଇ କିଛିଦିନ ମଣିଷ ସମାଜରେ ବିତାଇବାକୁ ଗଲା ।

ଯାଇ ଯାଇ ଶେଷରେ ଗୋଟିଏ ସୁନ୍ଦର ସହରରେ ପହଞ୍ଚିଲା । ସେଠାରେ ସେ ମଣିଷ ରୂପ ଧରି ଥାଏ । ମଣିଷମାନଙ୍କର ଚାଲିଚଳନ, ଗତିବିଧି ଲକ୍ଷ୍ୟ କରୁଥାଏ । ନୀତିନିୟମ ପାଳନ କରି ମଣିଷମାନେ କିପରି ସୁଖରେ ଅଛନ୍ତି ତାହା ସେ ଭଲ କରି ଜାଣିବାକୁ ଚାହିଁଲା ।

ସେଇ ସହରର ପ୍ରଧାନ ରକ୍ଷକ ଥାଏ ବୀରସିଂହ । ନଗରବାସୀଙ୍କର ବିଶ୍ୱାସ ଥାଏ ଯେ ବୀରସିଂହ ପରି ବଳଶାଳୀ ଲୋକ ନଗରରକ୍ଷକ ହୋଇ ରହିଥିବା ପର୍ଯ୍ୟନ୍ତ ନଗର ଉପରେ କୌଣସି ବିପଦର ଆଶଙ୍କା ନାହିଁ । କାମରୂପ ଚାହୁଁଥିଲା ବୀରସିଂହର ପରାକ୍ରମ ପରୀକ୍ଷା କରି ଦେଖିବାକୁ । ଦିନେ ସେ ବୀରସିଂହ ପାଖକୁ ଗଲା ଓ କଥାବାର୍ତ୍ତା କଲା ।

ବୀରସିଂହ ଏଇ ନୂତନ ଆଗନ୍ତୁକଟିକୁ ଦେଖି ଅନେକ ବାହାଦୁରି ମାରି ନିଜର ବଡ଼ପଣ ଦେଖାଇଲା; ଶେଷକୁ କହିଲା, "ମୁଁ ଶୁଣିଛି ରାଜା ବିକ୍ରମାର୍କ ରାକ୍ଷସମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ହରାଇ ଦେଉଥିଲେ । ଯଦି ସେପରି ସୁଯୋଗ ମୋତେ ଥରେ ମିଳନ୍ତା ତେବେ ମୁଁ ବି ସେମାନଙ୍କୁ ହରାଇ ଦିଅନ୍ତି ।"

ଏକଥା ଶୁଣିବା ମାତ୍ରେ କାମରୂପ ନିଜର ପ୍ରକୃତ ରୂପ ଧରି କହିଲା, "ବର୍ତ୍ତମାନ ତୁ ତିନିଥର ମୋତେ ପରିକ୍ରମା କରି ମୋ ପାଦରେ ପ୍ରଣାମ କର; ତେବେ ଯାଇ ତୋତେ ମୁଁ ପ୍ରାଣ ନେଇ ଯିବାକୁ ଦେବି ।" ବୀରସିଂହ ଥରି ଥରି ରାକ୍ଷସର କଥା ଅନୁସାରେ ପରିକ୍ରମା କରି ତା' ପାଦ ତଳେ ପଡ଼ିଗଲା । ମାନବଙ୍କର ପରାକ୍ରମ କିପରି ସେକଥା ଭଲ ଭାବରେ ବୁଝିଗଲା କାମରୂପ ।



ସେଠାରୁ ଯାଇ ସେ ଆଉ ଏକ ନଗରରେ ଜଣେ ଧନୀ ଘରେ ପହଞ୍ଚିଲା । ଧନୀ ଲୋକର ହେମାଙ୍ଗୀ ନାମରେ ଗୋଟିଏ ସୁନ୍ଦର ଝିଅ ଥାଏ । ସେଇ ତା'ର ଏକମାତ୍ର ସନ୍ତାନ । ଝିଅଟିର ବିବାହ ଯୋଗ୍ୟ ବୟସ ହେବାରୁ ତା'ର ବାପା ମନେ ମନେ ବରପାତ୍ର ଖୋଜୁଥା'ନ୍ତି ।

ଦିନେ କାମରୂପ ଏକ ସୁନ୍ଦର ଯୁବକ ହୋଇ ସେଠାରେ ପହଞ୍ଚି ଧନୀକୁ କହିଲା ଯେ ସେ ତାଙ୍କର କନ୍ୟାକୁ ବିବାହ କରିବାକୁ ଚାହେଁ । ଧନୀବ୍ୟକ୍ତିଟି ଏତେ ସହଜରେ ମାନିଯିବା ଲୋକ ନୁହେଁ । ସେ ଯୁବକର ଘର, ବଂଶ, ଧନ ଆଦି ବିଷୟରେ ନାନା ପ୍ରଶ୍ନ କରି ଶେଷକୁ ପ୍ରସ୍ତାବଟି ପ୍ରତ୍ୟାଖ୍ୟାନ କରିଦେଲେ ।

ତା'ପରେ କାମରୂପ ନିଜରୂପ ଧରି ଚିତ୍କାର କରି ପଚାରିଲା, "ବର୍ତ୍ତମାନ କହ ତୋ ଝିଅକୁ ମୋତେ ବିବାହ ଦେବୁ ନା ନାହିଁ ?" ଧନୀ-ବ୍ୟକ୍ତିଟି ଭୟରେ ଛାନିଆ ହୋଇଯାଇ ବିବାହ ଦେବ ବୋଲି ତରବରରେ କହିପକାଇଲା ।

ତା'ଭୟ ଦେଖି ରାକ୍ଷସ ଥଟ୍ଟାରେ ଅଟ୍ଟହାସ୍ୟ କରିଉଠିଲା ଓ ତତ୍‌କ୍ଷଣାତ୍ ସେଠାରୁ ଚାଲି-ଗଲା । ଏବେ ସେ ଜାଣିଗଲା ମଣିଷ ଭିତରେ ପ୍ରେମ ଓ ଆଦରର ଭାବ କେଉଁ ପ୍ରକାରର ।

ସେଇ ନଗରରେ ଶିବାନନ୍ଦ ନାମରେ ଜଣେ ଭକ୍ତ ରହୁଥାଏ । ପ୍ରତିଦିନ ତା' ଘରେ ଭଜନ କୀର୍ତ୍ତନ ହୁଏ, ଅସଂଖ୍ୟ ଭକ୍ତଙ୍କର ଯିବାଆସିବା ଲାଗିଥାଏ ।

ଦିନେ ଅଧରାତିରେ କାମରୂପ ରାକ୍ଷସରୂପ ଧରି ଶିବାନନ୍ଦ ପାଖରେ ପହଞ୍ଚି କହିଲା, "ତୁ ସବୁ-ଦିନେ ଯେଉଁ ଈଶ୍ୱରଙ୍କର ଭଜନ କରୁଛୁ ତାଙ୍କର ନିନ୍ଦା କରିବୁ ନା ନାହିଁ ?"



ଶିବାନନ୍ଦ ରାକ୍ଷସର ପାଦ ପାଖରେ ପଡ଼ିଯାଇ କହିଲା, "ମୋତେ ସେ ପାପରେ ଭାଗୀ କରାଅ ନାହିଁ ।" ରାକ୍ଷସ କିନ୍ତୁ ନଛୋଡ଼ବନ୍ଧା । ଶେଷକୁ ଶିବାନନ୍ଦ ନାଚାର ହୋଇ ନିଜ ଜୀବନ ରକ୍ଷା କରିବାକୁ ଯାଇ ରାକ୍ଷସର କଥା ଅନୁସାରେ ଈଶ୍ୱରଙ୍କୁ ଗାଳିଦେଲା । ତା'ପରେ କାମରୂପ ସେଠାରୁ ଚାଲିଗଲା । ତାକୁ ଜଣାପଡ଼ିଗଲା ମଣିଷମାନଙ୍କର ଭକ୍ତି କେତେ ଦୂର । ତା'ପରେ କାମରୂପ ସିଧା ବିନ୍ଧ୍ୟାଚଳକୁ ଲେଉଟି ଆସିଲା । ଋଷିଙ୍କୁ ଦର୍ଶନ କରି କହିଲା, "ଋଷିବର, ଆପଣ ତ ଭଲ ମାନବ ଜନ୍ମ କଥା କହିଲେ ! କିନ୍ତୁ ମୁଁ ଦେଖିଲି ମାନବ ଖୁବ୍ ସ୍ୱାର୍ଥୀ । ଏକଥା ସତ ଯେ ମାନବ ସୃଷ୍ଟିର ସମସ୍ତ ପ୍ରାଣୀଙ୍କ ଉପରେ ଅଧିକାର ସାବ୍ୟସ୍ତ କରିପାରିଛି; ସଭ୍ୟତାର ସୃଷ୍ଟି କରିଛି ଓ ସୁଖମୟ ଜୀବନ ବିତାଇ ପାରୁଛି । କିନ୍ତୁ ତା'ର ଜୀବନ କୃତ୍ରିମତାଭରା; ନାଟକଟିଏ ପରି । ସେ ଯାହାକୁ ଠିକ୍ ଭାବି କାମ କରେ ସେଥିରେ ବି ତା'ର ବିଶ୍ୱାସ୍ ନ ଥାଏ ।"

"ତେବେ କହ ତୁ କେଉଁ ଜନ୍ମ ଚାହୁଁଛୁ ?" ଋଷି ପଚାରିଲେ ।

"ମୁଁ ମଣିଷ ଜନ୍ମହିଁ ଚାହେଁ ।" କାମରୂପ କହିଲା ।

ଋଷି ଆଶ୍ଚର୍ଯ୍ୟ ହୋଇ ଏହାର କାରଣ ପଚାରନ୍ତେ, କାମରୂପ କହିଲା, "ମଣିଷ ଜୀବନ ଯେତେ କୃତ୍ରିମ ହେଲେ ମଧ୍ୟ ତାହା ମଣିଷଜନ୍ମ । ମୁଁ ସବୁପ୍ରକାର ଶକ୍ତିରେ ଶକ୍ତିଶାଳୀ ହୋଇ ମଧ୍ୟ ଜୀବନ ପ୍ରତି ବିରକ୍ତ ହୋଇଗଲି । କିନ୍ତୁ ମୁଁ ଯାହା ଦେଖିଲି ମଣିଷ ତା'ର ନିଜ ଜୀବନକୁ ବେଶୀ ମୂଲ୍ୟ ଦିଏ । ତା'ର ଜୀବନ ପ୍ରତି ଆଶା ଓ ବିଶ୍ୱାସ ଅଛି । ସେଥିପାଇଁ ସେ ମୃତ୍ୟୁକୁ ଡରେ । ଆଉ ମୃତ୍ୟୁରୁ ନିଜକୁ ରକ୍ଷା କରିବାକୁ ଯାଇ ନିଜର ପ୍ରେମ, ସ୍ନେହ ବିଶ୍ୱାସ, ଧନ ସବୁ ତ୍ୟାଗ କରିପାରେ । ଏଥିରୁ ସ୍ପଷ୍ଟ ଜଣାଯାଏ କି ମଣିଷ ଭିତରେ ଜୀବନ ପ୍ରତି ତୀବ୍ର ଆକର୍ଷଣ ଅଛି । ସେଇ କାରଣରୁ ଜୀବନସାରା ବଞ୍ଚିବାର ଇଚ୍ଛା ରଖିଥିବା ମାନବଜନ୍ମ ମୋର ଖୁବ୍ ପସନ୍ଦ ।"

ତା' ପରେ ଋଷି ରାକ୍ଷସ ଉପରେ କିଛି ଅଭି-ମନ୍ତ୍ରିତ ଜଳ ସିଞ୍ଚିଦେଲେ । ସେ ତତ୍କ୍ଷଣାତ୍ ନଗରୀର କୌଣସି ଏକ ଘରେ ଜନ୍ମ ନେଲା ।





# ପରଶୁରାମ

ଋଷି ଜମଦଗ୍ନି ଥିଲେ ଋଷି ଋଚିକଙ୍କର ପୁତ୍ର ଓ ଋଷି ବିଶ୍ୱାମିତ୍ରଙ୍କ ଭଣଜା । ରାଜା ପ୍ରସେନଜିତ୍‌ଙ୍କ କନ୍ୟା ରେଣୁକାଙ୍କୁ ସେ ବିବାହ କରିଥିଲେ । କାଳକ୍ରମେ ତାଙ୍କର ପାଞ୍ଚ ପୁଅ ଜନ୍ମନେଲେ । ସେମାନେ ହେଉଛନ୍ତି ବସୁ, ବିଶ୍ୱାବସୁ, ବୃହଦ୍‌ଭାନୁ, ବୃହତ୍‌କଣ୍ୱ ଓ ରାମ ।

ଥରେ ରେଣୁକା ପାଣି ଆଣିବାକୁ ନଦୀକୁ ଯାଇଥା'ନ୍ତି । ଦେଖିଲେ ଚିତ୍ରରଥ ଗନ୍ଧର୍ବ ସସ୍ତ୍ରୀକ ଜଳକ୍ରୀଡ଼ା କରୁଛନ୍ତି । ସେ ତାଙ୍କର ରୂପରେ ମୋହିତ ହୋଇ ଘଡ଼ିଏ ଠିଆହୋଇ ଚାହିଁ-ରହିଲେ । ହଠାତ୍ ସଚେତନ ହେଲେ; ଅନେକ ବିଳମ୍ବ ହୋଇଗଲାଣି । ତେଣୁ ସେ ଶୀଘ୍ର ଶୀଘ୍ର ଘରକୁ ଫେରିଆସିଲେ । କିନ୍ତୁ ତାଙ୍କର ବିଳମ୍ବରେ ଏଣେ ତାଙ୍କ ସ୍ୱାମୀ ଜମଦଗ୍ନି ଖୁବ୍ ରାଗିଗଲେଣି । ପୁଣି ତପସ୍ୟା ବଳରେ ଯେତେ-ବେଳେ କାରଣଟି ଜାଣିପାରିଲେ, ତତ୍‌କ୍ଷଣାତ୍ ପୁଅମାନଙ୍କୁ ଆଦେଶ ଦେଲେ ମା'କୁ ବଧ କରିବାକୁ । ପ୍ରଥମ ଚାରିପୁଅ କୌଣସିମତେ ରାଜି ହେଲେ ନାହିଁ । କିନ୍ତୁ କନିଷ୍ଠ ପୁତ୍ର ରାମ ପିତାଜ୍ଞା ପାଳନ କରି ମାତାଙ୍କୁ ହତ୍ୟା କଲେ । ଆଜ୍ଞାବହ ପୁତ୍ରର କାର୍ଯ୍ୟରେ ସେ ଖୁବ୍ ଖୁସୀ ହୋଇ ବର ଯାଚିଲେ । ରାମ ପ୍ରଥମ ବରରେ ତାଙ୍କ ମା'ଙ୍କର ଜୀବନ ଭିକ୍ଷା କଲେ । ଜମଦଗ୍ନି ରେଣୁକାଙ୍କୁ ବଞ୍ଚାଇବା ସଙ୍ଗେ ସଙ୍ଗେ ରାମଙ୍କୁ ଆହୁରି ଏକ ବର ଦେଲେ ଯେ ସେ କଦାପି ଯୁଦ୍ଧରେ ହାରିବେ ନାହିଁ । ସେହି ରାମଙ୍କର ଆୟୁଧ ପରଶୁ ଥିବାରୁ ସମସ୍ତଙ୍କ ନିକଟରେ ସେ ପରଶୁରାମ ଭାବରେ ପରିଚିତ ହେଲେ ।

ଥରେ ସେ ନିଜର ଜେଜେବାପା ଋଷି ଋଚିକଙ୍କୁ ଦେଖା କରିବାକୁ ତାଙ୍କ ଆଶ୍ରମକୁ

ଗଲେ । ସେଠାରେ କିଛିଦିନ ରହି ଋଷି ଔର୍ବଙ୍କ ଆଶ୍ରମକୁ ଗଲେ । ସେ ମଧ୍ୟ ଭାର୍ଗବବଂଶୀୟ ଥିଲେ । କିଛିଦିନ ପରେ ପ୍ରପିତାମହ ଭୃଗୁଙ୍କ ଆଶ୍ରମକୁ ଗଲେ । କୁହାଯାଏ ଭୃଗୁଙ୍କ ଆଶ୍ରମରେ ପହଞ୍ଚିଲା ବେଳେ ଭୃଗୁଙ୍କ ଶିଷ୍ୟମାନେ ପରଶୁ-ରାମଙ୍କ ତେଜ ସହ୍ୟ କରି ନ ପାରି ଆଖି ବନ୍ଦ କରିଦେଇଥିଲେ ।

ଭୃଗୁ ନିଜର ଅଣନାତି ପରଶୁରାମଙ୍କୁ ଖୁବ୍ ଆଦର ଯତ୍ନ କରି ରଖିଲେ । ଦିନେ ସେ ତାଙ୍କୁ କହିଲେ, "ପୁଅ, ତୋର, ମୋର ଓ ଜଗତର କଲ୍ୟାଣ ପାଇଁ ମୁଁ ତୋତେ ଗୋଟିଏ କାମ କରି-ବାକୁ କହିବି । ତୁ ହିମାଳୟରେ ଯାଇ ଶିବଙ୍କୁ ତପସ୍ୟା କରି ପ୍ରସନ୍ନ କର । ତୋର ସମସ୍ତ ଇଚ୍ଛା ଅଚିରେ ପୂର୍ଣ୍ଣ ହେବ ।"

ତା'ପରେ ପରଶୁରାମ ହିମାଳୟରେ ପହଞ୍ଚି ତପସ୍ୟା ଆରମ୍ଭ କଲେ । ତାଙ୍କ ତପସ୍ୟାର ଦୃଢ଼ତା ଦେଖି ହିମାଳୟର ମୁନିଋଷିମାନେ ଆଶ୍ଚର୍ଯ୍ୟ ହେଲେ । ଭଗବାନ୍ ଶିବ ପରଶୁରାମଙ୍କୁ ପରୀକ୍ଷା କରିବାକୁ ଚାହିଁଲେ । ଦିନେ ସେ ଏକ କିରାତ ରୂପରେ ଆସି ପରଶୁରାମଙ୍କୁ ଡାକି କହିଲେ, "ଏଇ, ତୁ କିଏ ? ଏଠିକି କାହିଁକି ଆସିଛୁ ?"

ପରଶୁରାମ ଧୀରେ ନିଜର ଆଖି ଖୋଲିଲେ ଓ ବିନୟପୂର୍ବକ ସବୁ ପ୍ରଶ୍ନର ଉତ୍ତର ଦେଲେ । କିନ୍ତୁ କିରାତ ତଥାପି ଗୋଳମାଳ କରିବାର ଦେଖି ସେ କହିଲେ, "ଭାଇ, ତୁମେ କାହିଁକି ମୋ



ତପସ୍ୟାରେ ବିଘ୍ନ ଘଟାଉଛ ? ଯଦି ବୁଦ୍ଧ ତ ଆସ ତୁମେ ବି ମୋ ସହିତ ତପସ୍ୟା କର ।"

ତା'ପରେ ଦୁହିଁଙ୍କ ମଧ୍ୟରେ କଥାବାର୍ତ୍ତାରେ ବଚସା ସୃଷ୍ଟି ହେଲା । କିନ୍ତୁ କ୍ରମେ ପରଶୁରାମ ଜାଣିପାରିଲେ ଯେ ଏ କିରାତ ସାଧାରଣ ଲୋକ ନୁହେଁ, କୌଣସି ମହାତ୍ମା । ତେଣୁ ସେ କିଛି ନ ଭାବି ତାଙ୍କ ପାଦତଳେ ପଡ଼ିଗଲେ ।

ଭଗବାନ୍ ଶିବ ପ୍ରସନ୍ନ ହୋଇ ପରଶୁରାମଙ୍କୁ ଉଠାଇ କହିଲେ, "ବତ୍ସ, ତୁମର ଏବେ ତରୁଣ ବୟସ । ରୌଦ୍ରାସ୍ତ୍ର ଧାରଣ କରିବାର ଶକ୍ତି ତୁମର ବର୍ତ୍ତମାନ ହୋଇ ନାହିଁ । ତୁମେ କିଛିଦିନ ତୀର୍ଥାଟନ କରି ଫେରିଆସ ।" ଏକଥା କହି ସେ ଅନ୍ତର୍ଦ୍ଧାନ ହୋଇଗଲେ ।

ତା'ପରେ ସେ କିଛିଦିନ ପାଇଁ ତପସ୍ୟା ବନ୍ଦ କରି ତୀର୍ଥାଟନ କଲେ ଓ ପରେ ପୁଣି ଫେରିଆସି ତପସ୍ୟା କଲେ ।

ସେହି ସମୟରେ ଇନ୍ଦ୍ର ଦେବତାମାନଙ୍କୁ ନେଇ ଶିବଙ୍କ ପାଖକୁ ଆସି ନିବେଦନ କରି କହିଲେ, ଭଗବାନ୍ ! ଦୁରଦୃଷ୍ଟ ଦାନବ ଆମର ସ୍ୱର୍ଗରାଜ୍ୟ ଧ୍ୱଂସ କରୁଛି । ଆପଣ ସ୍ୱୟଂ ଆସି ଆମକୁ ରକ୍ଷା କରନ୍ତୁ ।"

ଶିବ ଏକଥା ଶୁଣି ପରଶୁରାମଙ୍କୁ ଡକାଇ-ପଠାଇଲେ । ସେ ଆସି ପହଞ୍ଚିବା ମାତ୍ରେ ଶିବ ଆଦେଶ ଦେଲେ, "ରାମ, ମୁଁ ଶୁଣିଛି ଦାନବ-ମାନେ ଇନ୍ଦ୍ରଙ୍କର ସ୍ୱର୍ଗରାଜ୍ୟ ଧ୍ୱଂସ କରୁଛନ୍ତି । ତୁମେ ଯାଇ ତାଙ୍କ ସହିତ ଯୁଦ୍ଧ କରି ସେଠାରୁ



ଅବଲମ୍ବେ ତାଙ୍କୁ ବିତାଡ଼ିତ କର ।"

"ଭଗବାନ୍ ! ଆପଣ ତ ଜାଣନ୍ତି ଦାନବମାନେ କେତେ ଶକ୍ତିଶାଳୀ । ମୁଁ ସେମାନଙ୍କୁ କିପରି ପରାଜିତ କରିପାରିବି ?" ପରଶୁରାମ ପଚାରିଲେ ।

ତା'ପରେ ଶିବ ଗୋଟିଏ ପରଶୁ ବା କୁଠାରରେ ନିଜର ତେଜ ସ୍ଥାପନ କରି ତାଙ୍କୁ ପରଶୁରାମଙ୍କୁ ଦେଲେ ।

ସେହିଦିନଠାରୁ ସେ ପରଶୁରାମ ରୂପେ ଖ୍ୟାତ ହେଲେ । ସ୍ୱର୍ଗରାଜ୍ୟ ଦାନବମାନଙ୍କ କବଳରୁ ଉଦ୍ଧାର କରି ଇନ୍ଦ୍ରଙ୍କୁ ସମର୍ପଣ କରି ପୁଣି ହିମାଳୟକୁ ଫେରିଆସି ତପସ୍ୟାରେ ନିରତ ହେଲେ । ଏହି କୃତିତ୍ୱରେ ଶିବ ସନ୍ତୁଷ୍ଟ ହୋଇ ତାଙ୍କୁ ଅତି ଆଦରରେ ମହାନ୍ ଭାର୍ଗବ ଅସ୍ତ୍ର ପ୍ରଦାନ କଲେ ।

ତା'ପରେ ସେ ହିମାଳୟ ଛାଡ଼ି ନିଜ ପିତାମାତାଙ୍କୁ ଦେଖିବାକୁ ଗଲେ । ରାସ୍ତାରେ ଦେଖିଲେ ବାଘଟାଏ ଗୋଟାଏ ବ୍ରାହ୍ମଣ ବାଳକକୁ ଆକ୍ରମଣ କରୁଛି । ବାଘ ଉପରେ ବ୍ରହ୍ମାସ୍ତ୍ର ପ୍ରୟୋଗ କରି ସେ ସେହି ବାଳକକୁ ରକ୍ଷା କଲେ । ବାଘଟି ପଡ଼ିଯିବା ମାତ୍ରେ ସେଥିରୁ ଏକ ଗନ୍ଧର୍ବ ବାହାରିଆସିଲା ଓ ପରଶୁରାମଙ୍କୁ ପ୍ରଣାମ କରି କହିଲା ଯେ ସେ ଅଭିଶାପବଶରୁ ଏପରି ହୋଇଥିଲା । ଏବେ ନିଜ ରୂପ ନେଇ ସ୍ୱର୍ଗକୁ ଯାଉଛି । ବାଘ ମୁହଁରୁ ପରଶୁରାମ ଯେଉଁ ବାଳକଟିକୁ ରକ୍ଷା କରିଥିଲେ ତା'ର ନାମ ଅକୃତବ୍ରଣ । ସେ ଥିଲା ଶାନ୍ତ ମୁନିଙ୍କ ପୁତ୍ର । ସେ ତୀର୍ଥାଟନ କରିବାକୁ ବାହାରି ବାଟ ଭୁଲି ଜଙ୍ଗଲରେ ପଶି ବାଘ ମୁହଁରେ ପଡ଼ିଥିଲା । ପରଶୁରାମ ତା'ର ଜୀବନ ରକ୍ଷା କରିଥିବାରୁ ସେ ସାରାଜୀବନ ତାଙ୍କର ଶିଷ୍ୟ ଓ ସେବକ ହୋଇ ରହିଲା ।

ତା'ପରେ ପରଶୁରାମ ଅକୃତବ୍ରଣଙ୍କୁ ସଙ୍ଗରେ ନେଇ କ୍ରମଶଃ ଭୃଗୁ, ଔର୍ବ ଓ ଋଚିକ ଆଦି ମୁନିମାନଙ୍କ ଆଶ୍ରମମାନଙ୍କୁ ଯାଇ ସେମାନଙ୍କୁ ଆନନ୍ଦିତ କଲେ । ତା'ପରେ ମାତାପିତାଙ୍କୁ ଦେଖା କରିବାକୁ ଘରକୁ ଲେଉଟିଗଲେ ଓ ସେଠାରେ ପହଞ୍ଚି ମାତାପିତାଙ୍କୁ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ । (କ୍ରମଶଃ)





ଭାରତ-କାହାଣୀ

## ଦାନର ମୂଲ୍ୟ

ଏକଦା ଶତାନନ୍ଦ ନାମରେ ଜଣେ ରାଜା ଥିଲେ । ସେ ବହୁଦେଶ ଜୟ କରି ପରାଜିତ ରାଜା ଓ ପ୍ରଜାମାନଙ୍କର ଧନ-ସମ୍ପଦ ନିଜ ନଗରକୁ ବୋହି ନେଇଆସୁଥିଲେ । ତାଙ୍କ ନଗର ଐଶ୍ୱର୍ଯ୍ୟରେ ଉଚ୍ଛୁଳି ଉଠୁଥିଲା ।

ରାଜା ବ୍ରାହ୍ମଣମାନଙ୍କ ପ୍ରତି ଅତ୍ୟନ୍ତ ଉଦାର ଥିଲେ । ସେ ଲୁଣ୍ଠନ କରି ଆଣୁଥିବା ଧନ-ସମ୍ପଦ ବ୍ରାହ୍ମଣମାନଙ୍କ ମଧ୍ୟରେ ଦାନ ରୂପେ ବଣ୍ଟିତ ହେଉଥିଲା । ସେମାନେ ରାଜାଙ୍କୁ ଆଶୀର୍ବାଦ କରୁଥିଲେ ଏବଂ ତାଙ୍କ ଗୁଣଗାନ କରୁଥିଲେ ।





ରାଜା ଶତାନନ୍ଦଙ୍କ ଅନ୍ତେ ତାଙ୍କ ପୁତ୍ର ସହସ୍ରାନୀକ ଅଚିରେ ସିଂହାସନ ଆରୋହଣ କଲେ । ସେ ମଧ୍ୟ ଥିଲେ ଅତ୍ୟନ୍ତ ସାହସୀ ତଥା ବଳବାନ୍ । କିନ୍ତୁ ରାଜ୍ୟଜୟ ଦିଗରେ ତାଙ୍କର କୌଣସି ଆଗ୍ରହ ନ ଥିଲା ।



ପରଲୋକଗତ ରାଜାଙ୍କଠାରୁ ସଦୈବ ଦାନ ପାଇବାରେ ଅଭ୍ୟସ୍ତ ବ୍ରାହ୍ମଣମାନେ ନୂତନ ରାଜାଙ୍କଠାରୁ କୌଣସି ଦାନ ନ ପାଇ ହତାଶ ହେଲେ । ସେମାନେ ସହସ୍ରାନୀକଙ୍କୁ ଭେଟି ସେ ପିତାଙ୍କ ପଦାଙ୍କ ଅନୁସରଣ କରନ୍ତୁ ବୋଲି ଉପଦେଶ ଦେଲେ ।

“ମୋ ପିତାଙ୍କ ଦାନକର୍ମ ଯଦି ତାଙ୍କର ମଙ୍ଗଳ କରିଛି ବୋଲି ମୋର ହୃଦ୍‌ବୋଧ ହେବ, ତେବେ ମୁଁ ମଧ୍ୟ ଦାନ କରିବ ।” ନୂଆ ରାଜା କହିଲେ । ବ୍ରାହ୍ମଣମାନେ ଋଷି ସ୍ୱର୍ଗବଙ୍କୁ ଯାଇ ଅନୁରୋଧ କଲେ କି ଦାନ ଦ୍ୱାରା ପରଲୋକଗତ ରାଜାଙ୍କର ମଙ୍ଗଳ ହୋଇଛି ବୋଲି ସେ ପ୍ରମାଣ କରିଦିଅନ୍ତୁ ।





ସ୍ୱର୍ଗବ ରାଜା ଶତାନୀକଙ୍କ ଆତ୍ମା ସ୍ୱର୍ଗରେ ଥିବ ବୋଲି ନିଶ୍ଚିତ ହୋଇ ଧ୍ୟାନରେ ବସିଲେ ଏବଂ ସୂକ୍ଷ୍ମଶରୀରରେ ସ୍ୱର୍ଗରେ ପହଞ୍ଚି ଶତାନୀକଙ୍କୁ ଖୋଜିଲେ । କିନ୍ତୁ ଦେବଗଣ ତାଙ୍କୁ କହିଲେ କି ସେମାନେ ସେଠାରେ ଶତାନୀକଙ୍କୁ ଦେଖିନାହାନ୍ତି । ସ୍ୱର୍ଗବ ଅଗତ୍ୟା ନର୍କକୁ ଗଲେ ।

ଶତାନକଙ୍କ ଆତ୍ମା ସେଠାରେ ଥିବାର ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ । "ମୋର ପ୍ରଥମ ପାପ ହେଲ ଅନ୍ୟାୟରେ ସମ୍ପଦ ଠୁଳ କରିବା । ଦ୍ୱିତୀୟ ପାପ ହେଲ ବ୍ରାହ୍ମଣମାନଙ୍କୁ ଅଯଥା ଦାନ ଦ୍ୱାରା ବିଳାସୀ ବନାଇଦେଇ ସେମାନଙ୍କ କର୍ତ୍ତବ୍ୟ ଭୁଲାଇଦବା ।" ରାଜା ତାଙ୍କୁ ବୁଝାଇଦେଲେ ।





ଋଷି ସ୍ୱର୍ଗର ତରୁଣ ରାଜା ସହସ୍ରାନୀକଙ୍କୁ ଭେଟି ସବୁ କହିଲେ । ନିଜେ ଶ୍ରମ କରି ଯାହା ଉପାର୍ଜନ କରିବେ, ପିତାଙ୍କ ସଦ୍‌ଗତି କାମନା କରି ତାହାହିଁ ଦାନ କରିବା ନିମନ୍ତେ ଋଷି ରାଜାଙ୍କୁ ପରା-ମର୍ଶ ଦେଲେ ।

ସଙ୍ଗେ ସଙ୍ଗେ ସହସ୍ରାନୀକ ଅନ୍ୟ ଏକ ରାଜ୍ୟକୁ ବାହାରିଗଲେ । ସେଠାରେ ସେ ଥିଲେ ଅପରିଚିତ । ଜଣେ ସାଧାରଣ ଶ୍ରମିକ ଭାବରେ ବର୍ଷେ କାଳ କାମ କରି ସେ ଯାହା ମଜୁରି ପାଇଲେ, ତାହା ଯଥାସାଧ୍ୟ ସଞ୍ଚୟ କରି ନିଜ ନଅରକୁ ଫେରିଲେ ।





ସେ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରି ସେହି ସଞ୍ଚିତ ଅର୍ଥ ଦାନ କଲେ ଓ କହିଲେ, "ଏ ଦାନ ସାମାନ୍ୟ, କିନ୍ତୁ ପ୍ରତି ମୁଦ୍ରା ନିଜେ ପରିଶ୍ରମ କରି ଉପାର୍ଜନ କରିଛି । ଏହା ଗ୍ରହଣ କରି ମୋ ପିତାଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ପ୍ରାର୍ଥନା କରନ୍ତୁ ।"

ଏହାପରେ ନଗରର ଭଣ୍ଡାରଘର ଖୋଲି ପୂର୍ବରୁ ଅନ୍ୟାୟ ଭାବରେ ଅର୍ଜିତ ଯେତିକି ଅର୍ଥ ଥିଲା, ରାଜ୍ୟର ଗରିବଙ୍କ ଭିତରେ ସେ ତାହା ବିତରଣ କରିଦେଲେ । ଏସବୁ ଅନ୍ତେ ସେ ଭାର୍ଗବଙ୍କୁ ଭେଟି ପିତାଙ୍କ ଅବସ୍ଥା ସମ୍ପର୍କରେ ଅନୁସନ୍ଧାନ କଲେ ।







ଭାର୍ଗବ ସୂକ୍ଷ୍ମ ଶରୀରରେ ପୁନର୍ବାର ନର୍କପୁରୀକୁ ଗଲେ । ସେତିକିବେଳେ ଶତାନିକ ନିଜ ପାପଫଳ ଭୋଗ କରି-ସାରି, ପୁତ୍ରର ସତ୍‌କର୍ମ ଦ୍ୱାରା ସହାୟତା ପ୍ରାପ୍ତ ହୋଇ ସୁବର୍ଣ୍ଣ ରଥ ଆରୋହଣ କରି ସ୍ୱର୍ଗପୁରୀ ଅଭିମୁଖେ ଯାତ୍ରାରମ୍ଭ କରୁଥିଲେ । ଋଷି ଭାର୍ଗବ ଫେରିଆସି ରାଜା ସହସ୍ରାନିକଙ୍କୁ ସେ ସୁସମ୍ବାଦ ଦେଲେ ।

# ରାଜ୍ୟାଭିଷେକ

ଜଣେ ରାଜାଙ୍କର ଥିଲେ ତିନୋଟି ପୁଅ । ଥରେ ରାଜା ଭାବିଲେ ତାଙ୍କ ଅନ୍ତେ କିଏ ରାଜପଦ ପାଇଁ ଯୋଗ୍ୟ ତାହା ଥରେ ପରୀକ୍ଷା କରି ଦେଖିନେଲେ ହୁଅନ୍ତା । ତା'ପରେ ସେ ତିନିପୁଅଙ୍କୁ ଡାକି ପ୍ରତ୍ୟେକଙ୍କୁ ଲକ୍ଷେ କରି ସ୍ୱର୍ଣ୍ଣମୁଦ୍ରା ଦେଇ କହିଲେ, "ଏହି ଧନ ନିଅ, ତୁମ୍ଭ ମଧ୍ୟରୁ ଏଇ ଧନ ନେଇ ଯିଏ ସବୁଠାରୁ ଅଧିକ ସାମର୍ଥ୍ୟ ଦେଖାଇପାରିବ ତାକୁହିଁ ମୁଁ ରାଜଗାଦିରେ ବସାଇବି । ଯାଅ, ତୁମ୍ଭକୁ ଛ'ମାସ ସମୟ ଦେଲି ।"

ଛ'ମାସ ପରେ ଦରବାରକୁ ଆସିଲେ ତିନିପୁଅ । ବଡ଼ଟି କହିଲା—"ମହାରାଜ ମୁଁ ସେହି ଧନରେ ଶାସ୍ତ୍ର ଓ ଧର୍ମଗ୍ରନ୍ଥ ସବୁ ପ୍ରସ୍ତୁତ କରି ପ୍ରଜାଙ୍କୁ ବାଣ୍ଟିଛି ।" ମଧ୍ୟମଟି କହିଲା—"ମୁଁ ଏମିତି ଏକ ପ୍ରକ୍ରିୟା ଶିକ୍ଷା କରିଛି ଯେ ତା ଦ୍ୱାରା ମୁଁ ଯେଉଁଠି ଓ ଯେତେବେଳେ ଚାହିଁବି ପାଣି ବର୍ଷା କରାଇପାରିବି । ଭବିଷ୍ୟତରେ ଆମ ଦେଶରେ ପାଣିର ଅଭାବ ଆଉ ରହିବ ନାହିଁ ।" ତୃତୀୟଟି କହିଲା—"ମହାରାଜ ମୁଁ ସେଇ ଧନ ଦ୍ୱାରା ସେନାପତି ଓ ସୈନିକମାନଙ୍କୁ ମୋ ହାତରେ ରଖିଛି । ବର୍ତ୍ତମାନ ଏଇ ରାଜନଗରକୁ ଘେରି ରହିଥିବା ସୈନ୍ୟମାନେ ସବୁ ମୋର ସ୍ତାବକ । ତେଣୁ ଆପଣ ତୁରନ୍ତ ମୋର ରାଜ୍ୟାଭିଷେକ କରାଇ ଦିଅନ୍ତୁ ।"

ରାଜା ବାଧ୍ୟ ହୋଇ ସେହିଦିନହିଁ ତୃତୀୟ ପୁତ୍ରର ରାଜ୍ୟାଭିଷେକ କରାଇ ଦେଲେ ।





# ଗୁମ୍ଫାର ଭୂତ

ରାମଗୁପ୍ତ ନାମରେ ଜଣେ ଲୋକ ଥିଲା । ତା'ର ଥାଏ ଛୋଟ ଦୋକାନଟିଏ । ତା' ଛଡ଼ା ସେ ଛେଳି ପାଳିଥାଏ । ସେଥିରୁ ମଧ୍ୟ କିଛି ପଇସା ପାଏ । ତା' ସ୍ତ୍ରୀର ଶାଢ଼ି ଓ ଅଳଙ୍କାର ପ୍ରତି ଖୁବ୍ ଲୋଭ ଥାଏ । ତେଣୁ ଛେଳିବିକ୍ରି ପଇସାରେ ରାମଗୁପ୍ତ ତା' ସ୍ତ୍ରୀ ପାଇଁ ଭଲ ଭଲ ଶାଢ଼ି ଓ ଅଳଙ୍କାର କିଣିଦିଏ ।

ଥରେ କୌଣସି ଉତ୍ସବ ହେବାର ଥାଏ । ରାମଗୁପ୍ତକୁ ଶାଢ଼ି କିଣିବାକୁ ହେବ । ତେଣୁ ସେ ଛେଳିଟିଏ ନେଇ ହାଟକୁ ଗଲା । ପଇସାପତ୍ର ବ୍ୟାପାରରେ ସେ କାହାକୁ ବିଶ୍ୱାସ କରେ ନାହିଁ । ସେଦିନ ଥାଏ ବର୍ଷାପାଗ । ବହୁତ କମ୍ ଲୋକ ଆ'ନ୍ତି ହାଟରେ । ଛେଳିର ପ୍ରକୃତ ମୂଲ୍ୟ ଦେଇ କିଣିବାକୁ କେହି ଗ୍ରାହକ ମିଳୁ ନ ଥା'ନ୍ତି । ଶେଷକୁ ବସି ବସି ସନ୍ଧ୍ୟା ହେବାରୁ ରାମଗୁପ୍ତ ଛେଳିଟି ଧରି ଘରକୁ ଫେରିଲା ।

ଗାଁରୁ ହାଟକୁ ଯିବା ରାସ୍ତା ମଝିରେ ଗୋଟାଏ ମୋଡ଼ ପଡ଼େ । ସେହି ମୋଡ଼ ଉପରେ ଥାଏ ପାହାଡ଼ଟିଏ ଓ ପାହାଡ଼ରେ ଥାଏ ଗୋଟାଏ ଗୁମ୍ଫା । ଲୋକେ କୁହନ୍ତି ସେଠାରେ ଭୂତଟାଏ ଅଛି ।

ଗୁମ୍ଫା ପାଖ ହୋଇଆସିବା ମାତ୍ରେ ରାମଗୁପ୍ତ ଛନିଆ ହୋଇଗଲା ଓ ତରବର ହୋଇ ବଡ଼ ବଡ଼ ପାହୁଣ୍ଡ ପକାଇ ଗୁମ୍ଫା ଟପିଯିବାକୁ ବସିଲା । ଠିକ୍ ସେତିକବେଳେ ଗୁମ୍ଫା ଭିତରୁ ଏକ ଗମ୍ଭୀର କଣ୍ଠରେ କିଏ କହିଲା, "କିଏ ଯାଉଛି ? ଅନ୍ଧାର ହେବା ପରେ ମଧ୍ୟ ଏ ବାଟରେ ଯାଉଛି ଏତେ ସାହସ କାହାର ?"

ରାମଗୁପ୍ତ ଥରି ଥରି କହିଲା, "ମୁଁ ରାମଗୁପ୍ତ । ହାଟରେ ଛେଳିଟି ବିକ୍ରି ହୋଇପାରିନି । ତାକୁ ଘରକୁ ଫେରାଇନେଉଛି । ଆଉ ଭବିଷ୍ୟତରେ କେବେ ସନ୍ଧ୍ୟା ପରେ ଏ ବାଟରେ ଆସିବି ନାହିଁ ।"

"ଛେଳିକୁ ମୋ ଗୁମ୍ଫାରେ ବାନ୍ଧିଦେଇ ଚାଲି-

ଯାଅ । ସକାଳେ ଆସି ଛେଳିର ଦାମ୍ ନେଇ-ଯିବ ।" ଗୁମ୍ଫା ଭିତରୁ ଶୁଭିଲା ।

"ଯାହା ହେଉ ଜୀବନ ତ ବଞ୍ଚିଗଲା !" ଏଇ କଥା ଭାବି ଛେଳିକୁ କୌଣସି ମତେ ଗୁମ୍ଫା ପାଖରେ ବାନ୍ଧି ରାମଗୁପ୍ତ ଦୌଡ଼ି ଦୌଡ଼ି ଗାଁକୁ ପଳାଇଲା ।

ହେଲେ ଘରକୁ ଯିବାକୁ ଏଣେ ଭୟ । ଏମିତି ଛେଳିଟି ହରାଇଛି ଜାଣିଲେ ସ୍ତ୍ରୀ ଭୀଷଣ ଭାବରେ କଳି ତକରାଳ କରିବ । ବରଂ ସକାଳେ ଭୂତଠାରୁ ଯାହା ମିଳିବ ନେଇଗଲେ ଅନ୍ତତଃ ଘରେ ପଶିବାକୁ ଦେବ । ଏ କଥା ଭାବି ଝଟ୍କିରି ରାମଗୁପ୍ତ ଅନ୍ୟ କାହାର ଘର ପିଣ୍ଡାରେ ରାତିଟା କଟାଇଦେଲା । ସକାଳ ହେବାରୁ ସାହସ ବାନ୍ଧି ଗୁମ୍ଫା ନିକଟକୁ ଗଲା ।

"ଛେଳିର ମାଂସ ଖୁବ୍ ଭଲ ଥିଲା । ନିଅ ତୁମର ଟଙ୍କା ।" ଏଇ କଥା ସହିତ ଗୋଟିଏ ଟଙ୍କାଥଳି ଗୁମ୍ଫା ଭିତରୁ ଆସି ରାମଗୁପ୍ତ ପାଦ ଉପରେ ପଡ଼ିଲା । ଟଙ୍କାଥଳିଟି ଉଠାଇନେଇ ଏକା ନିଶ୍ୱାସକେ ଘରକୁ ଦୌଡ଼ିଛି । ଘରେ ପହଞ୍ଚି ଗଣି ଦେଖିଲା ପୂରା ପଚିଶ ଟଙ୍କା । ତିନଟା ଛେଳିର ଦାମ୍ ।

"ସେଇ ପତଳା ଚ୍ଛେଚିଆ ଛେଳିଟାକୁ ନେଇ ପଚିଶ ଟଙ୍କା ଦେଇଛି କିଏ ସେଇ ମୂର୍ଖ ?" ରାମଗୁପ୍ତର ସ୍ତ୍ରୀ ପଚାରିଲା ।

"ଶୁଣ, ତୁମେ ଏ କଥା କାହାକୁ ବି କହିବ ନାହିଁ ।" ଏ କଥା କହି ରାମଗୁପ୍ତ ଆଦ୍ୟପ୍ରାନ୍ତ ସବୁ ନିଜ ସ୍ତ୍ରୀକୁ ଖୁସିରେ ଶୁଣାଇଲା ।



ରାମଗୁପ୍ତର ସ୍ତ୍ରୀ କହିଲା, "ହଁ ଠିକ୍ କଥା । ହେଲେ ତୁମେ ମଧ୍ୟ କାହାକୁ କହିବ ନାହିଁ ।"

ପରେ ପରେ ରାମଗୁପ୍ତର ସ୍ତ୍ରୀ ତରବର ହୋଇ ଯାଇ ତା'ର ପଡ଼ୋଶୀ ଘରର ବାନ୍ଧବୀକୁ କହିଦେଲା । କ୍ରମେ ଏ କାନ ସେ କାନ ହୋଇ ସାରା ଗ୍ରାମର ଲୋକେ କଥାଟା ଜାଣିଗଲେ । ସମସ୍ତେ ଗୋଠନରେ ଛେଳିଟିମାନ ରଖିଥା'ନ୍ତି । ରାତି ହେଲେ ଗୁମ୍ଫାକୁ ନେବେ । ଯାହାର ଛେଳି ନ ଥାଏ ସିଏ କିଣିକରି ରଖିଲା । ଏପରି କରି ସନ୍ଧ୍ୟା ପରେ ଦେଖାଗଲା ପ୍ରାୟ ପଚିଶଜଣ ସରଳ ଗାଁଲୋକ ପ୍ରତ୍ୟେକେ ଗୋଟିଏ ଗୋଟିଏ ଛେଳି ଧରି ଗୁମ୍ଫା ପାଖରେ ହାଜର ।

ରାମଗୁପ୍ତ ସବୁଠାରୁ ଆଗ କରି ଦଶଟା ଛେଳି ନେଇ ଗୁମ୍ଫାରେ ବାନ୍ଧିଆସିଲା । ଅନ୍ୟ-

ମାନେ ମଧ୍ୟ ତାହାହିଁ କଲେ । ହେଲେ ଛେଳି-ମାନଙ୍କର ଦାମ୍ ନେଇଯିବାକୁ କୌଣସି ଜଣୁ ତ କିଛି କହିଲେ ନାହିଁ ! ଯାହା ହେଉ ସେମାନେ ଫେରିଆସିଲେ ।

ସକାଳ ହେଉହେଉ ସମସ୍ତେ ପୁଣି ଗୁମ୍ଫା ପାଖରେ ହାଜର । ଗୁମ୍ଫା ଖାଲି ପଡ଼ିଛି । ଖଣ୍ଡିଏ ଛୋଟ କାଗଜ ଚଟାଣରେ ରଖାହୋଇଛି । ସମସ୍ତେ ବ୍ୟସ୍ତ ହୋଇ ଖୋଲି ପଢ଼ିଲେ । ସେଥିରେ ଲେଖା ଥିଲା—

"ଏ ଚିଠିଟି ଯିଏ ଲେଖିଛି ସିଏ ଭୂତ ନୁହେଁ ଆପଣମାନଙ୍କ ପରି ମଣିଷ । କାମ ଖୋଜି ଖୋଜି ନ ପାଇ ଏଠିସେଠି ବୁଲିବୁଲି ଥିବା ଲୋକ ମୁଁ । ମୋ ନାମ ପ୍ରତାପ । ବାପା ମରି-ଯିବା ପରେ ଶହେଟି ମାତ୍ର ଟଙ୍କା ଧରି ମୁଁ ଘରୁ ଚାଲିଆସିଲି । ଆପଣଙ୍କ ଗାଁରେ ସମସ୍ତଙ୍କୁ ନେହୁରା ହେଲି କାମ ଖଣ୍ଡିଏ ପାଇଁ । ହେଲେ ସମସ୍ତେ ସେଇ ଏକା କଥା କହିଲେ, 'ନୂଆ ଲୋକ ତୁମକୁ ଆମେ ଜାଣୁ ନାହିଁ, କାମ କପରି ଦେବୁ ?' ଅଥଚ କୌଣସି ଅସ୍ତିତ୍ୱ ନ ଥିବା ଭୂତକୁ କିପରି ଆପଣମାନେ ବିଶ୍ୱାସ କଲେ ? ଅସ୍ତିତ୍ୱ ନ ଥିବା ଭୂତ ପ୍ରକୃତରେ ମୋର ଯାହା ଉପକାର କରିଛି ଆଉ କେହି କରିନ । ମୁଁ ଗତ କାଲି ଗୋଟିଏ ଗାଁରୁ ଆଉ ଗୋଟାଏ ଗାଁକୁ କାମ ସନ୍ଧାନରେ ଯାଉଥିଲି । ବର୍ଷା ହେବାରୁ ଆଉ ଅତି କ୍ଳାନ୍ତ ଥିବାରୁ ଏଇଠି ରହିଗଲି । ତା'ପରେ ଘମଗୁ ପ୍ତର ଛେଳି-ନାଟକର ଆରମ୍ଭ ହୁଏ । ଆପଣମାନେ ବିନା କାମରେ ଏତେ ପଇସା ମିଳିବ ବୋଲି ଭୂତକୁ ବିଶ୍ୱାସ କରି ଆସିଛନ୍ତି, ଅଥଚ ମଣିଷକୁ ବିଶ୍ୱାସ କରୁ-ନାହାନ୍ତି । ବର୍ତ୍ତମାନ ଏ ଛେଳିସବୁ ବିକି କରି ସହରରେ ଛୋଟ ବ୍ୟବସାୟଟିଏ କରିବି ଓ କ୍ରମେ ଲାଭ ହେଲେ ଆପଣମାନଙ୍କ ଟଙ୍କା ପରି-ଶୋଧ କରିଦେବି । ସେତିକି ସମୟ ଧୈର୍ଯ୍ୟ ଧରି ରହିବାକୁ ମୋର ଅନୁରୋଧ ରହିଲା ।"

ଚିଠିଟି ପଢ଼ି ସମସ୍ତେ ସ୍ତମ୍ଭିଭୂତ ହେଲେ । କେହି କାହାକୁ କିଛି ନ କହି ନୀରବରେ ଗାଁକୁ ଲେଉଟିଆସିଲେ । ତେବେ ସେହିଦିନଠୁ ସେମାନଙ୍କ ଭୂତଭୟ ଛୁଟିଗଲା ।



# ଦସ୍ତଖତ

ସୂର୍ଯ୍ୟଗଡ଼ ଓ ଚନ୍ଦ୍ରଗିରି ରାଜ୍ୟଦ୍ୱୟ ମଧ୍ୟରେ ଥିଲା ଗୋଟିଏ ଅରଣ୍ୟ । ସେ ଅରଣ୍ୟରେ ନରସିଂହ ନାମକ ଭୀଷଣ ଡାକୁ ଦଳବଳ ନେଇ ରହୁଥାଏ । ଉଭୟ ଦରବାରରେ ଡାକୁର ଗୁପ୍ତଚର ରହୁଥା'ନ୍ତି ।

ଥରେ ଚନ୍ଦ୍ରଗିରିର ରାଜା ସୂର୍ଯ୍ୟଗଡ଼ର ରାଜାଙ୍କଠାରୁ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ଋଣ ସ୍ୱରୂପ ଚାହିଁଲେ । ସୂର୍ଯ୍ୟଗଡ଼ର ରାଜା ସେଥିରେ ସମ୍ମତ ହେଲେ । ଚନ୍ଦ୍ରଗିରିର ମନ୍ତ୍ରୀ ଯାଇ ସେ ଋଣ ଗ୍ରହଣ କରିବା କଥା ହେଲା ।

ଗୁପ୍ତଚର ଜରିଆରେ ଏ ସମ୍ବାଦ ପାଇ ଡାକୁ ଯାଇ ଜଣେ ପଣ୍ଡିତଙ୍କ ଘରେ ରାତ ଅଧରେ ପହଞ୍ଚିଲା । ଡାକୁ ଥିଲା ନିରକ୍ଷର । ମନ୍ତ୍ରୀଙ୍କ ଦସ୍ତଖତ ଶିଖାଇ ନ ଦେଲେ ସେ ପଣ୍ଡିତଙ୍କୁ ମାରିଦେବ ବୋଲି ଧମକ ଦେଲା । ପଣ୍ଡିତ ଅନେକ ଥର ଦସ୍ତଖତ ଶିଖାଇଲେ ।

ପରଦିନ ଚନ୍ଦ୍ରଗିରିର ମନ୍ତ୍ରୀ ଦେହରକ୍ଷୀମାନଙ୍କ ଗହଣରେ ସୂର୍ଯ୍ୟଗଡ଼ ଯାଉଥିବା ବାଟରେ ବଣ ଭିତରେ ଡାକୁଦ୍ୱାରା ଅଟକ ହେଲେ । ତାଙ୍କ ପୋଷାକ ନିଜେ ପିନ୍ଧି, ଦେହରକ୍ଷୀମାନଙ୍କ ପୋଷାକ ନିଜ ଅନୁଚରମାନଙ୍କୁ ପିନ୍ଧାଇ, ମନ୍ତ୍ରୀଙ୍କ ପାଖରେ ଥିବା ମୋହର ଓ ପତ୍ର ଧରି ଡାକୁ ସୂର୍ଯ୍ୟଗଡ଼ ଦରବାରରେ ପହଞ୍ଚିଲା ।

ରାଜା ସ୍ୱର୍ଣ୍ଣମୁଦ୍ରା ଦେଲେ । ରସିଦରେ ଡାକୁ ଦସ୍ତଖତ କଲା ମାତ୍ରେ କିନ୍ତୁ ରାଜା କଟମଟ କରି ଅନାଇଲେ ଓ ଡାକୁ ଗିରଫ କଲେ ।

କଥା ହେଲା, ଚତୁର ପଣ୍ଡିତ ଡାକୁ ଯେଉଁ ଦସ୍ତଖତ ଶିଖାଇଥିଲେ, ତାହା ତା' ନିଜ ନାମ ଡାକୁ ନରସିଂହ !






# ଯୋଗାଯୋଗ

ଗୋଟିଏ ସହରରେ ଜଣେ ଶିକ୍ଷିତ ଯୁବକ ଥାଏ । କିନ୍ତୁ ସେ ଅତି ସାଧାରଣ ପରିବାରର ଲୋକ ହୋଇଥିବାରୁ ସମାଜରେ ତା'ର କୌଣସି ପ୍ରତିଷ୍ଠା ନ ଥାଏ ।

ନିଜ ଯୋଗ୍ୟତା ଅନୁସାରେ ସେ କୌଣସି ଚାକିରିଟିଏ ପାଇବା ନିମନ୍ତେ ରାଜଦରବାରକୁ ଗଲା । କିନ୍ତୁ ବହୁ ଚେଷ୍ଟା କରି ମଧ୍ୟ ରାଜାଙ୍କ ସାକ୍ଷାତ୍ ପାଇଲା ନାହିଁ ।

"ହଇହୋ, ତୁମଭଳି ସବୁ ଅଜଣା ଅଶୁଣା ଯୁବକଙ୍କ ସହ ସାକ୍ଷାତ କରି ଯଦି ରାଜା ନିଜ ସମୟ ବିତାଇବେ, ତେବେ ରାଜକାର୍ଯ୍ୟ ହେବ କିପରି ? ରାଜାଙ୍କୁ ଦେଖା କରିବା କଥା ଭୁଲି ଯାଅ ।" ଦରବାରର ଜଣେ କରଣି କହିଲେ ।

"ଆଜ୍ଞା, ରାଜାଙ୍କୁ ଭେଟିବି ବୋଲି ବହୁତ ଆଶା ବାନ୍ଧି ଆସିଥିଲି !" ଯୁବକ କହିଲା ।

"ମୋତେ ଦେଖିଲ, ତୁମ ପକ୍ଷରେ ସେତିକ କ'ଣ ଯଥେଷ୍ଟ ଗର୍ବର କଥା ନୁହେଁ ?" କରଣି ମହୋଦୟ କହିଦେଲେ ।

ଏଣେ ବଞ୍ଚିରହିବାକୁ ହେଲେ କିଛି କରିବା ଦରକାର । କିନ୍ତୁ ସେ କ'ଣ କରିବ ? ବୁଝି ନ ପାରି ଦିନେ ଗାଁ ପାଖରେ ଥିବା ବଣ ଭିତରେ ବୁଲୁଥାଏ, ଦେଖିଲା ଯୋଡ଼ିଏ ସମାଧି ଘାସବୁଦା ଓ ଉଇହୁଙ୍କା ଭିତରେ ଲୁଚିହୋଇ ରହିଛି ।

ହାତରେ କିଛି କାମ ନ ଥାଏ । ତେଣୁ ସେ ସେହି ସମାଧି ଦୁଇଟି ଉପରୁ ଗଛଲତା କାଟିକାଟି କରି ସେ ସ୍ଥାନଟିକୁ ପରିଷ୍କାର କଲା । ପାଖରେ ଗୋଟିଏ ପୁରୁଣା କୂଅ ପୋତିହୋଇ ପଡ଼ିଥାଏ । ତାକୁ ମଧ୍ୟ ସେ ସଫା କଲା । ଗୋଟିଏ କୁଡ଼ିଆ ବନାଇ ସେଇଠି ରହିଲା ।

କେଇଦିନ ପରେ ଦଳେ ବଣିକ ସେ ରାସ୍ତା-

ଗଣେଶ

ଦେଇ ଯାଉଥା'ନ୍ତି । କୂଅ ପରିଷ୍କାର ହୋଇଥିବାରୁ ଦେଖି ସେମାନେ ସେଠାରେ ବିଶ୍ରାମ କଲେ । ଯୁବକ ପାଣି କାଢ଼ିନେଇ ସେମାନଙ୍କ ତୃଷା ନିବାରଣ କଲା । ପାଣି ପାଇଁ ପଇସା ଦେବା ଅସଙ୍ଗତ ହେବ ଜାଣି ବଣିକମାନେ ପଚାରିଲେ, "ଏ ସମାଧି ଦୁଇଟି କାହାର ?"

"ଏହା ଜଣେ ମହାପୁରୁଷଙ୍କର ତଥା ତାଙ୍କ ପତ୍ନୀଙ୍କର । ମୁଁ ଏହାକୁ ଜଗି ଏଠାରେ ରହିଛି ।" ଯୁବକ ଉତ୍ତର ଦେଲା ।

"ସତେ ? ତେବେ ସମାଧି ଉପରେ ଚୂନ କାମ କରିବା ପାଇଁ ଏ ପଇସାତକ ରଖ ।" ଏହା କହି ବଣିକମାନେ ଯୁବକକୁ କିଛି ଦେଇ ଚାଲିଗଲେ ।



ଯୁବକ ଚୂନ କାମ କଲା ପରେ ମଧ୍ୟ କିଛି ପଇସା ରହିଲା । ସେ ସେଥିରେ ସ୍ଥାନଟିକୁ ଆହୁରି ଆକର୍ଷଣୀୟ କଲା । ବଣ ମଝିଦେଇ ସହରକୁ ରାସ୍ତା । ତେଣୁ ସବୁଦିନେ ଦଳେ ଦଳେ ବାଟୋଇ ସେ ରାସ୍ତାରେ ଯିବା ଆସିବା କରନ୍ତି । ବଣ ମଝିରେ ସୁନ୍ଦର ସ୍ଥାନଟିଏ ଦେଖି ସମସ୍ତେ ଟିକିଏ ବସନ୍ତି ଓ ସମାଧିର କିଛି ମାହାତ୍ମ୍ୟ ଥିବ ଭାବି ଯୁବକକୁ ସମାଧିର ରକ୍ଷଣାବେକ୍ଷଣ ନିମନ୍ତେ କିଛି କିଛି ପଇସା ଦେଇଯା'ନ୍ତି ।

ଅଳ୍ପ ଦୂରରେ ଝରଣାଟିଏ ଥାଏ । ଯୁବକ ପରିଶ୍ରମ କରି ଝରଣା ନିକଟରୁ ନାଳଟିଏ ଖୋଳାଇ ଆଣିଲା । ସେ ସୁଶୀତଳ ପାଣି ସ୍ଥାନଟିର ସୌନ୍ଦର୍ଯ୍ୟ ବହୁ ପରିମାଣରେ ବୃଦ୍ଧି କରିଦେଲା । ପାଣି ଆସିବାରୁ ସେ ସେଠାରେ ଫଳମୂଳ ମଧ୍ୟ ଉତ୍ପାଦନ କରିପାରିଲା ।

କ୍ରମେ ଲୋକମାନେ ଯିବା ବାଟରେ ସେ ସମାଧିରେ ଫୁଲ ଚଢ଼ାଇଲେ ଏବଂ ଧୂପ ଦୀପ ଜାଳିଲେ । ଧୀରେ ଧୀରେ ଏକଥା ବି ପ୍ରଚାରିତ ହୋଇଗଲା ଯେ କୌଣସି କାମନା ରଖି ସେ ସମାଧି ପ୍ରଦକ୍ଷିଣ କଲେ ସେ କାମନା ପୂର୍ଣ୍ଣ ହୁଏ । ତେଣିକି କେବଳ ବାଟୋଇମାନେ ନୁହନ୍ତି, ଆଖପାଖର ଲୋକେ 'ଖାସ୍ ସମାଧି ସକାଶେ ସେଠାକୁ ଆସିବାକୁ ଆରମ୍ଭ କଲେ । ସେଠାରେ

ଦୋକାନ ବଜାର ମଧ୍ୟ ବସିଲା ।

ସେ ଖବର ରାଜାଙ୍କ କାନରେ ପହଞ୍ଚିଲା । ଲୋକଙ୍କୁ କେହି ଦଗା ଦେଉଛି କି ନା ଜାଣିବା ସକାଶେ ସେ କେତେଜଣ ବିଶିଷ୍ଟ ଲୋକଙ୍କୁ ବଣ ଭିତରକୁ ପଠାଇଲେ । ସେମାନେ ଯାଇ ଦେଖିଲେ ସମାଧି ଦୁଇଟି ଦେହରେ କିଛି ସଙ୍କେତ ରହିଛି । ସେମାନେ ତାହାର ନକ୍ସା ଆଣି ରାଜାଙ୍କୁ ଦେଲେ ।

ରାଜା ଚମକିଉଠିଲେ । ସେ ପ୍ରତୀକ ତାଙ୍କ ବଂଶର ପ୍ରତିଷ୍ଠାତାଙ୍କର ବୋଲି ସେ ଜାଣିଥିଲେ । ବହୁପୂରୁଷ ତଳର କଥା । ରାଜବଂଶର ପ୍ରତିଷ୍ଠାତା ଷଡ଼ଯନ୍ତ୍ର ଚକ୍ରରେ ଶତ୍ରୁ ହାତ୍ରେ ନିହତ ହେବା ଉପରେ ରାଣୀଙ୍କୁ ଧରି କୌଣସି ଅଜ୍ଞାତ ସ୍ଥାନକୁ ଚାଲିଯାଇଥିଲେ । ତାଙ୍କ ମୃତ୍ୟୁ ପରେ ଯେଉଁମାନେ ତାଙ୍କୁ ସମାଧି ଦେଇଥିଲେ, ସେମାନେ ମରିଯିବା ପରେ କେହି ଆଉ ସେ ସମାଧିର ସନ୍ଧାନ ଜାଣି ନ ଥିଲେ ।

ନିଜ ବଂଶର ପ୍ରତିଷ୍ଠାତାଙ୍କ ସମାଧିର ସନ୍ଧାନ ପାଇ ରାଜା ବହୁତ ଖୁସୀ ହେଲେ ଓ ଯୁବକଙ୍କୁ ଡକାଇପଠାଇ ପଚାରିଲେ, "ତୁମେ ଯେ ପ୍ରଚାର କରିଛ ସେ ସମାଧି ପ୍ରଦକ୍ଷିଣ କଲେ କାମନା ପୂର୍ଣ୍ଣ ହୁଏ, ତା'ର କିଛି ପ୍ରମାଣ ଅଛି କି ?"

"ମହାରାଜ, ପ୍ରମାଣ ଆପଣଙ୍କ ଆଗରେ । ଆପଣଙ୍କୁ ଥରେ ସାକ୍ଷାତ କରିବା ସକାଶେ ମୋର କାମନା ଥିଲା । ବହୁ ଚେଷ୍ଟା ସତ୍ତ୍ୱେ ତାହା ପୂର୍ଣ୍ଣ ହୋଇ ନ ଥିଲା । ସମାଧି ଆବିଷ୍କାର ପରେ, ଦେଖନ୍ତୁ ଆପଣହିଁ ମୋତେ ଡକାଇ ଦେଖା କଲେ ।" ଯୁବକ କହିଲା ।

ଯୁବକ ଯୋଗୁ ସମାଧିର ସନ୍ଧାନ ମିଳିଥିବାରୁ ଏବଂ ଯୁବକର ପ୍ରତ୍ୟୁତ୍ପନ୍ନମତି ଯୋଗୁ ରାଜା ଅତ୍ୟନ୍ତ ପ୍ରୀତ ହୋଇ ତାକୁ ପୁରସ୍କୃତ କରିବା ସଙ୍ଗେ ସଙ୍ଗେ ଦରବାରରେ ଗୋଟିଏ ଉତ୍ତମ ପଦ ଦେଲେ । ସେ ସମାଧି ଚତୁର୍ଦ୍ଦିଗରେ ବିଶାଳ ଉଦ୍ୟାନ ପ୍ରତିଷ୍ଠା ହେଲା ।



# ପୁଣ୍ୟାତ୍ମା ରଙ୍ଗଦାସ !

ଜଣେ ବେପାରୀ ହାଟକୁ ଯିବା ବାଟରେ ପ୍ରଥମେ ରଙ୍ଗଦାସକୁ ଦେଖିଲେ । ସେଦିନ ତାଙ୍କର ବହୁତ ଲାଭ ହେଲା । ରଙ୍ଗଦାସର ମୁହଁ ଦେଖିଥିବାରୁ ତାହା ହେଲା ଭାବି ସେ ଫେରିବା ବାଟରେ ରଙ୍ଗଦାସକୁ କିଛି ପଇସା ଦେଇଗଲେ ।

ରଙ୍ଗଦାସ ତେଣିକି ଇଚ୍ଛା କରି ସବୁଦିନେ ସକାଳେ ବେପାରୀଙ୍କ ଘର ଆଗରେ ପହଁତରା ମାରେ । ସବୁଦିନେ ବେପାରୀର ଲାଭ ହୁଏ । ସେ ତାଙ୍କୁ କିଛି କିଛି ପଇସା ଦିଅନ୍ତି । ଦିନେ ରଙ୍ଗଦାସ ଆସି ପାରିଲା ନାହିଁ । ସେଦିନ ବେପାରୀଙ୍କର ଲାଭ ହେଲା ନାହିଁ । ତେଣିକି ସେ ଅନେକଙ୍କୁ କହିଲେ, "ପୁଣ୍ୟାତ୍ମା ରଙ୍ଗଦାସ ଯୋଗୁ ମୋର ଯେତକ ଉନ୍ନତି !"

ରଙ୍ଗଦାସ ସେ କଥା ଶୁଣିଥିବା ଲୋକଙ୍କୁ ଧରି ବିଚାରକଙ୍କ ପାଖକୁ ଯାଇ କହିଲା, "ମୋ ପୁଣ୍ୟ ଯୋଗୁ ବେପାରୀର ଲାଭ । ସେ ମୋତେ ତା' ଲାଭର ଅଧା ଦେବା ଆବଶ୍ୟକ ।"

ବେପାରୀ ରାଜି ହେଲେ । କିନ୍ତୁ ପରଦିନ ରଙ୍ଗଦାସର ମୁହଁ ଦେଖିବା ସତ୍ତ୍ୱେ ବେପାରୀଙ୍କ ନୌକା ବହୁତ ମାଲ ସହ ବୁଡ଼ିଗଲା । ବେପାରୀ ଯାଇ ବିଚାରକଙ୍କୁ କହିଲେ "ରଙ୍ଗଦାସର କିଛି ପାପ ଯୋଗୁ ଏହା ହେଲା ନିଶ୍ଚୟ । ସେ ତେଣୁ ଅଧା କ୍ଷତି ପୂରଣ କରୁ ।"

ବିଚାରକ ସେହି ଅନୁସାରେ ରାୟ ଦେଲେ । ରଙ୍ଗଦାସ ସମ୍ପତ୍ତି ବିକି ବେପାରୀଙ୍କୁ କ୍ଷତିପୂରଣ ଦେଲା । ତେଣିକି ସେ ଆଉ ବେପାରୀଙ୍କୁ ମୁହଁ ଦେଖାଇଲା ନାହିଁ ।





# ଟିପ୍‌ପଣୀ

ସେଦିନ ମୋତି ସିଂହ ଘରକୁ ଗାଡ଼ିରେ ଲଦାହୋଇ ତା' କ୍ଷେତରୁ ଧାନ ବୁହା-ହୋଇ ଯାଉଥାଏ । ପଡ଼ୋଶୀଘରର ଭେଣ୍ଡିଆ ଟୋକା ଗୋପାଳ ଟିପ୍‌ପଣୀ ଦେଲା, "ଆଃ ! କେଡ଼େ ଭାଗ୍ୟବାନ୍ ତୁମେମାନେ ! କ୍ଷେତ ପଡ଼ିଛି, ଚାଷ କଲ । ଧାନ ହେଲା, ଘରକୁ ବୋହିନେଲ ! ଆରାମ ଆଉ କାହାକୁ କହନ୍ତି ! ବାହାବାଃ ।"

ଗାଡ଼ି ଚଳାଉଥିଲା ମୋତିସିଂହର ପୁଅ । ତା ନାମ ମୋହନ । ସେ ବୁଝିଲା, ଗୋପାଳ ଖୁସିହୋଇ ଏ କଥା କହୁନାହିଁ । ଈର୍ଷ୍ୟାବଶରେ କହୁଛି ।

କିନ୍ତୁ ଗୋପାଳର ମନୋଭାବ ନ ବୁଝିଲା ଭଳି ଭାବ ଦେଖାଇ ସେ ତା' ପାଖକୁ ଯାଇ କହିଲା, "ଗୋପାଳ, ତୁ ତ ଆମ ନିଜ ଲୋକ । କାମଦାମରେ ଆମକୁ ଟିକିଏ ଦୁଇଦିନ ପାଇଁ ସାହାଯ୍ୟ କରନ୍ତୁ ନାହିଁ ? ଅବଶ୍ୟ ତୋତେ ଯଥାକାଙ୍କ୍ଷିତ୍ ପାରିଶ୍ରମିକ ଦିଅନ୍ତୁ । ଦିନକୁ ତିନି ଟଙ୍କା ! କ'ଣ କହୁଛୁ ?"

ଗୋପାଳ ବେକାର ଘରେ ବସିଥାଏ । ସେ ତେଣୁ ପ୍ରସ୍ତାବରେ ରାଜି ହୋଇଗଲା । ଦୁଇ ଦିନ ଯାଇ କ୍ଷେତରେ କାମ କଲା । ମୋହନ ଖୁବ୍ ହାଲୁକା କାମ ଦେଲା । ପୁଣି ମଝିରେ ଥରେ· ପଇଡ଼ପାଣି ପିଇବାକୁ ଦେଲା । ସେ ଦୁଇ ଦିନ କାମ କରିବା ପରେ ଛଅଟଙ୍କା ପାଇ ଖୁସି ହେଲା ।

"ପୁଣି କାମରେ ଦରକାର ପଡ଼ିଲେ ମୋତେ ଖବର ଦେବ ।" ସେ କହିଲା ।

କେଇ ସପ୍ତାହ ପରେ ପୁଣି କାମ ପଡ଼ିଲା । ଗୋପାଳକୁ ଡକାହେଲା । ସେତେବେଳକୁ ବର୍ଷା

ସମସ୍ତ । ପୂର୍ବଥର ଭଳି ଏଥର କାମ ସେତେ ସହଜ ହେଲା ନାହିଁ । ଦୁଇରୁ ଥର ଗୋଡ଼ ଖସିବା ହେତୁ ଗୋପାଳ କଚଡ଼ା ଖାଇଲା ।

ତେବେ କାମ ପ୍ରତି ଗୋପାଳର ଆକର୍ଷଣ ମଧ୍ୟ ବଢ଼ିଯାଇଥାଏ । ସାରାଦିନ କାମ କରି ସେ ଖାଇବା ବେଳକୁ ବେଶ୍ କ୍ଷୁଧା ଅନୁଭବ କରୁଥାଏ । ଫଳରେ ଖାଦ୍ୟ ତାକୁ ଖୁବ୍ ସ୍ୱାଦୁ ଲାଗୁଥାଏ । ନିଦ ମଧ୍ୟ ଭଲ ହେଉଥାଏ । ଆଗେ ଯେପରି ଘରେ ବସି ବସି ବିରକ୍ତ ଲାଗୁଥାଏ, ଅନ୍ୟକୁ ସମାଲୋଚନା କରିବାକୁ ମନ ହେଉ-ଥାଏ, ଏଣିକି ସେପରି ହେଉ ନ ଥାଏ । ବିଶ୍ରାମ କରିବାକୁ ଯେଉଁ ସମୟ ମିଳୁଥାଏ, ସେ ସମୟ ବାସ୍ତବିକ ସେ ଉପଭୋଗ କରୁଥାଏ । ପନ୍ଦର ଦିନ ଖଟି, ଟଙ୍କା ପାଇ ସେ କାମରୁ ଛୁଟି ପାଇଲା ।

କ୍ରମେ ଶସ୍ୟ ବଢ଼ିବାର ଦେଖି ଗୋପାଳକୁ ବହୁତ ଖୁସି ଲାଗିଲା । ମୋତିସିଂହର କ୍ଷେତରେ ତେଣିକି ପରିଶ୍ରମ କରିବାକୁ ତାକୁ ଡାକରା ନ ପଡୁଥିଲେ ମଧ୍ୟ ସେ ସବୁଦିନେ ଥରେ ଯାଇ ବୁଲିଆସେ ।

ଶସ୍ୟ ଅମଳ ହେବା ପୂର୍ବରୁ ଚୋରଖଣ୍ଡମାନେ କାଳେ ସେସବୁ କାଟିନେବେ, ତେଣୁ ଛୋଟ ଛୋଟ କୁଡ଼ିଆ ବନାଇ ସେଥିରେ ପାଳି କରି ଚେଇଁ ଶୋଇ ପହରା ଦେବାକୁ ହୁଏ । ଗୋପାଳ ପହରା ଦେବାକୁ ଆଗଭର ହେଲା । ଦିନେ ରାତିରେ ସତକୁ ସତ ଚୋର ଫସଲ କାଟୁଥିବା



ବେଳେ ଗୋପାଳ ଅନ୍ୟମାନଙ୍କୁ ନିଦରୁ ଉଠାଇଦେଲା । ସମସ୍ତେ ଦୌଡ଼ିଯିବାରୁ ଚୋର କିଛି ନେଇ ନ ପାରି ପଳାଇଗଲା । ଗୋପାଳକୁ ମୋତିସିଂହ ଧନ୍ୟବାଦ ଦେଲେ ।

ତା'ପରେ ଫସଲ କଟା ଆରମ୍ଭ ହେଲା । ପୁଣି ଗୋପାଳକୁ ଡକାହେଲା । ସେ ମନ ଦେଇ କାମ କଲା । ଫସଲ ଗାଡ଼ିରେ ବୋଝେଇ ହୋଇ ମୋତିସିଂହ ଘରକୁ ଗଲାବେଳକୁ ସେ ଗାଡ଼ି ସହ ଯାଉଥାଏ । ମୋହନ ଲକ୍ଷ୍ୟ କରି ଦେଖିଲା ତା' ମୁହଁରେ ଈର୍ଷ୍ୟାଭାବ ନାହିଁ, ଅଛି ନିର୍ମଳ ଆନନ୍ଦ ।

ଗୋଟିଏ ଗାଡ଼ି ହଠାତ୍ ମୋହନ ଅନ୍ୟ ରାସ୍ତାରେ ନେଇଗଲା । ଗୋପାଳ ପଚାରିଲା, "ଭାଇ, ବାଟ ହୁଡ଼ିଲ କି ?" ମୋହନ ହସିଦେଇ ତାକୁ ଗାଡିରେ ବସାଇଲା । ଗାଡ଼ି ଯାଇ ଗୋପାଳ ଘରେ ପହଞ୍ଚିଲା ।

"ଇଏ କ'ଣ ?" ଗୋପାଳ ଆଶ୍ଚର୍ଯ୍ୟ ହୋଇ ମୋହନକୁ ଅନାଇ ପଚାରିଲା ।

"ଭାଇ, ତୁମ ଶୁଭେଚ୍ଛା ଓ ସାହାଯ୍ୟ ବାବଦ ଇଏ ସାମାନ୍ୟ ପ୍ରତିଦାନ ।" ମୋହନ କହିଲା ଓ ସେ ଗାଡ଼ିକ ଫସଲ ଗୋପାଳ ଘରେହିଁ ଜମେଇଦେଇ ଫେରିଲା ।

ସେତକ ବିକି କରି ଗୋପାଳ ଯାହା ପାଇଲା, ସେଥିରେ ସେ ହଳବଳଦ କିଣିଲା ଓ ତେଣିକି ନିଜ ଜମିରେ ଚାଷବାସ କରି ଉନ୍ନତି କଲା । ମୋହନ ପ୍ରତି ସେ କୃତଜ୍ଞ ହୋଇ କହୁଥାଏ, "ଭାଇ, ସେଦିନ ମୋର ଦୁଷ୍ଟ ଟିପ୍ପଣୀ ଶୁଣି ତୁମେ ଯଦି ରାଗିଯାଇଥାନ୍ତ, ତେବେ ମୁଁ ଯେମିତି ଅଳସୁଆକୁ ସେମିତି ଅଳସୁଆ ହୋଇ ରହିଥାନ୍ତି । ଧନ୍ୟ ତୁମର ମହତ୍ତ୍ୱ ।"

"ମୁଁ ତୋ ଉପରେ ରାଗିଥିଲେ ସେଥିରେ ମୋର ଲାଭ ହୋଇ ନ ଥାନ୍ତା କି ତୋର ଲାଭ ହୋଇ ନ ଥାନ୍ତା । ବର୍ତ୍ତମାନ ଆମେ ଦୁହେଁ ଲାଭବାନ୍ ।" ହସି ହସି ମୋହନ କହିଲା ।





# ଦେବୀ ଭାଗବତ

ବହୁ ପ୍ରାଚୀନ କାଳରେ ତ୍ୱଷ୍ଟା-ପ୍ରଜାପତି ଜଣେ ପ୍ରଧାନ ଦେବତା ରୂପେ ପୂଜା ପାଉଥିଲେ । ସେ ଥରେ ଇନ୍ଦ୍ର ଉପରେ ରୁଷ୍ଟ ହୋଇ ବିଶ୍ୱରୂପ ନାମକ ଏକ ଶକ୍ତିମାନ୍ ପୁରୁଷ ସୃଷ୍ଟି କଲେ । ଏହି ବିଶ୍ୱରୂପଙ୍କର ଥିଲା ତିନି-ଗୋଟି ମୁଖମଣ୍ଡଳ । ସେ ଯେତିକି ଯେତିକି ବଡ଼ ହେଲେ, ସେତିକି ସେତିକି ଅପୂର୍ବ ଶକ୍ତିର ପରିଚୟ ଦେବାକୁ ଲାଗିଲେ ।

ଗୋଟିଏ ମୁହଁରେ ସେ ବେଦପାଠ କରୁ-ଥିଲେ । ଅନ୍ୟ ମୁହଁ ଦ୍ୱାରା କରୁଥିଲେ ପାନା-ହାର । ତୃତୀୟ ମୁଖମଣ୍ଡଳସ୍ଥିତ ନୟନଯୁଗଳ ଦ୍ୱାରା ସେ ଭବିଷ୍ୟତ ଗର୍ଭକୁ ଦୃଷ୍ଟିପାତ କରି ପାରୁଥିଲେ ।

ସେ ଯେତେବେଳେ ତପସ୍ୟା କରୁଥିଲେ, ସେତେବେଳେ ଶୀତ, ବର୍ଷା ସବୁ ଭୁଲିଯାଉ-ଥିଲେ । ଏକାଗ୍ର ଭାବରେ ବର୍ଷ ବର୍ଷ ବ୍ୟାପି ସେ କ୍ଷୁଧା ତୃଷ୍ଣା ଭୁଲି ତପଃନିମଗ୍ନ ରହୁଥିଲେ ।

ତାଙ୍କର ସେଭଳି ତପସ୍ୟା ଦେଖି ଇନ୍ଦ୍ର ମନେ କଲେ, ବିଶ୍ୱରୂପ ନିଶ୍ଚେ ଇନ୍ଦ୍ରପଦ ପ୍ରାପ୍ତିର ବାସନା ପୋଷଣ କରୁଛନ୍ତି । ସେ ପ୍ରମାଦ ଗଣିଲେ । ରମ୍ଭା, ମେନକା, ଉର୍ବଶୀ ପ୍ରମୁଖ ଅପ୍ସରାମାନଙ୍କୁ ଡାକି ସେ କହିଲେ, "ଇନ୍ଦ୍ର-ପଦରୁ ମୋତେ ହଟାଇ ସେ ପଦ ନିଜେ ଅଧିକାର କରିବା ମାନସରେ ବିଶ୍ୱରୂପ ତପୋ-ମଗ୍ନ ରହିଛନ୍ତି । ତାଙ୍କୁ ବର୍ତ୍ତମାନ ତପସ୍ୟାରୁ ବିରତ ନ କଲେ ମୋ କଥା ସରିଲା । ତୁମ୍ଭେ-ମାନେହିଁ ମୋତେ ଏ ଦିଗରେ ସାହାଯ୍ୟ କରି ପାରିବ ।"

"ଦେବରାଜ ! ଆପଣ ଚିନ୍ତା କରନ୍ତୁ ନାହିଁ । ନୃତ୍ୟଗୀତ ଦ୍ୱାରା ବିଶ୍ୱରୂପଙ୍କ ମନ ହରଣ କରି



ଆମ୍ଭେମାନେ ତାଙ୍କୁ ତାଙ୍କ ତପସ୍ୟା ଭୁଲାଇ-ଦେବୁ । ଏ କାମ କରିବାକୁ ଆମକୁ ବିଶେଷ କ୍ଲେଶ ହେବ ନାହିଁ ।" ଅପ୍‌ସରାମାନେ କହିଲେ ।

ଅତଏବ ଅପ୍‌ସରାମାନେ ଯାଇ ବିଶ୍ୱରୂପଙ୍କ ତପସ୍ୟାପୀଠରେ ଉପସ୍ଥିତ ହେଲେ ଓ ତାଙ୍କ ସମ୍ମୁଖରେ ନିଜନିଜର ମନୋହର ନୃତ୍ୟକଳା ପ୍ରଦର୍ଶନ କଲେ । କିନ୍ତୁ ବିଶ୍ୱରୂପ ଏକାଧାରରେ ମୂକ-ବଧିର-ଅନ୍ଧ ଭଳି ବସିରହିଲେ ।

ଥରେଅଧେ ନୁହେଁ, ଅପ୍‌ସରାମାନେ ବାରଂ-ବାର ନୃତ୍ୟଗୀତ କଲେ । କିନ୍ତୁ କୌଣସି ଫଳ ନ ହେବାରୁ ଦେଖି ହତାଶ ତଥା ଉଦ୍ୟୁଖିତ ହୋଇ ସ୍ୱର୍ଗପୁରୀକୁ ପ୍ରତ୍ୟାବର୍ତ୍ତନ କରି ଇନ୍ଦ୍ରଙ୍କୁ କହିଲେ, "ଦେବରାଜ ! ଆମ ପ୍ରଚେଷ୍ଟା ବିଫଳ ହେଲା । ଆମେ ସବୁମତେ ଚେଷ୍ଟା କଲୁ । କିନ୍ତୁ ବିଶ୍ୱରୂପଙ୍କୁ ବିଚଳିତ କରିପାରିଲୁ ନାହିଁ । ସେ ସେ ଆମ ଉପରେ କ୍ରୁଦ୍ଧ ହୋଇ ଆମକୁ ଅଭିଶାପ ଦେଇନାହାନ୍ତି, ଏହାହିଁ ଆମର ସୌ-ଭାଗ୍ୟ ।"

ଇନ୍ଦ୍ରଙ୍କ ଆଶଙ୍କା ବର୍ତ୍ତମାନ ପ୍ରବଳ ଭୟରେ ପରିଣତ ହେଲା । ଏତେ କୁଶଳୀ ଅପ୍‌ସରାମାନେ ଯାହାଙ୍କୁ ଧ୍ୟାନଚ୍ୟୁତ କରିପାରିଲେ ନାହିଁ, ସେ ତପସ୍ୱୀ ତାଙ୍କ ପ୍ରତିଦ୍ୱନ୍ଦୀ ହେଲେ ତାଙ୍କର ଗତି କ'ଣ ହେବ ?

ନାନା ଚିନ୍ତାରେ ଅଧୀର ହୋଇ ଇନ୍ଦ୍ର ଐରାବତ ଆରୋହଣ କରି ବିଶ୍ୱରୂପଙ୍କ ଆଗରେ ପହଞ୍ଚିଲେ ଏବଂ ବଜ୍ର ପ୍ରହାର କରି ତାଙ୍କୁ ହତ୍ୟା କଲେ ।

ଯେଉଁ ମୁନିମାନେ ସେ ଘଟଣା ଜାଣିଲେ, ସେମାନେ ହାହାକାର କରି କହିଲେ, "ଇନ୍ଦ୍ରଙ୍କର ଏଭଳି ମତିଭ୍ରମ ହେଲା କିପରି ? ଏତେବଡ଼ ମହାତ୍ମାଙ୍କୁ ସେ ହତ୍ୟା କଲେ ? ଏ ପାପର ଫଳ ଭୋଗ ନ କରି ସେ ଯିବେ କୁଆଡ଼େ ?"

ବିଶ୍ୱରୂପଙ୍କୁ ହତ୍ୟା କରି ଇନ୍ଦ୍ର ନିଜ ପୁରୀକୁ ଫେରିଗଲେ ସତ, କିନ୍ତୁ ସେ ଆଶ୍ୱସ୍ତ ହୋଇ ପାରିଲେ ନାହିଁ । ତାଙ୍କର ଆଶଙ୍କା ହେଲା : ବିଶ୍ୱରୂପ ପୁନର୍ଜୀବନ ଲାଭ କରିବେ ନାହିଁ ତ ? ତାଙ୍କ ଆଖି ଆଗରେ ଯେଉଁ ମୃତଦେହର ଛବି ଭାସିଉଠିଲା, ସେଥିରେ ତାହା ସତେଜ ଦିଶୁ-ଥିଲା । ତେବେ କ'ଣ ସେ ପୁଣି ଉଠି-ବସିବେ ?

ଜଣେ କାରିଗରକୁ ଡାକି ସେ କହିଲେ,



"ବିଶ୍ୱରୂପଙ୍କୁ ମୁଁ ମାରିଦେଇଛି । କିନ୍ତୁ ତୁମେ ଯାଇ ତା' ମୁଣ୍ଡଟି କାଟିପକାଇ ଆସ ।"

"ଦେବରାଜ ! ମୃତ ବ୍ୟକ୍ତିର ଶିରଚ୍ଛେଦ ଭଳି ପାପକାର୍ଯ୍ୟ ମୁଁ କାହିଁକି କରିବି ? ବିଶ୍ୱରୂପଙ୍କୁ ଆପଣ କାହିଁକି ବଜ୍ର ଦ୍ୱାରା ହତ୍ୟା କଲେ, ତାହା ବୁଝିପାରୁନାହିଁ । ଯଦି ହତ୍ୟା କଲେ, ମୃତ ବ୍ୟକ୍ତି ପ୍ରତି ପୁଣି ଏତେ ଭୟ କାହିଁକି ? ଏହା କ'ଣ ଅତ୍ୟନ୍ତ ଅସ୍ୱାଭାବିକ ନୁହେଁ ?" କାରିଗର କହିଲା ।

"ଦେଖ ବାବୁ, ମୋ ଆଖିରେ ସେ ମୋର ଶତ୍ରୁ । ସେ ତପସ୍ୱୀ ହେଉ, ଯାହା ହେଉ । ଶତ୍ରୁକୁ ବିନାଶ କରିବା ମୋର କର୍ତ୍ତବ୍ୟ । ସେ ମରିଯିବା ପରେ ବି ସତେଜ ଦିଶୁଥିଲା ବୋଲି ମୁଁ ତୁମକୁ ତା' ମୁଣ୍ଡକାଟ କରିବାକୁ କହୁଥିଲି । ଜ୍ଞାନୀମାନେ କହନ୍ତି, ଅଗ୍ନି, ଋଣ ଏବଂ ଶତ୍ରୁ — ଏ ତିନିଙ୍କର ସାମାନ୍ୟ ମଧ ଅବଶେଷ ରଖିବ ନାହିଁ ।" ଇନ୍ଦ୍ର କହିଲେ ।

"ଦେବରାଜ ! ଆପଣ ଯାହାକୁ ହତ୍ୟା କଲେ, ସେ ନିରପରାଧ ତଥା ବ୍ରହ୍ମତେଜସମ୍ପନ୍ନ ବ୍ୟକ୍ତି । ତାକୁ ମାରିବା ଦ୍ୱାରା ଆପଣଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିବ ନାହିଁ ?" କାରିଗର ପଚାରିଲା ।

"ମୋର ପ୍ରକୃତି ଏପରି, ମୁଁ ବ୍ରହ୍ମହତ୍ୟା ଦୋଷ ଅପେକ୍ଷା ଶତ୍ରୁକୁ ଅଧିକ ଭୟ କରିଥାଏ । ବ୍ରହ୍ମହତ୍ୟା ଦୋଷରୁ କୌଣସି ନା କୌଣସି ପ୍ରାୟଶ୍ଚିତ୍ତ ଦ୍ୱାରା ମୁକ୍ତ ପାଇବି । କିନ୍ତୁ ଶତ୍ରୁଠାରୁ ରକ୍ଷା ପାଇବାକୁ ହେଲେ ତାକୁ ବଧ କରିବା ଛଡ଼ା ଅନ୍ୟ ଉପାୟ କ'ଣ ?" ଇନ୍ଦ୍ର ବୁଝାଇବାକୁ ଚେଷ୍ଟା କଲେ ।

"ଦେବରାଜ ! ଯେଉଁ କ୍ଷମତା ଲୋଭ ଆପଣଙ୍କୁ ଏଭଳି ପାପପୂର୍ଣ୍ଣ କାର୍ଯ୍ୟ କରିବାକୁ ପ୍ରେରଣା ଦେଲା, ସେ ଭଳି ଲୋଭ ମୋର ନାହିଁ । ତେଣୁ ମୁଁ କାହିଁକି ବିଶ୍ୱରୂପଙ୍କ ମୁଣ୍ଡକାଟ କରିବାକୁ ଯିବି ?" କାରିଗର ନିଜ ଆପତ୍ତି ଜଣାଇଲା ।

"ତୁମେ ମୋ କଥା ଅନୁସାରେ କାମ କଲେ ଯଜ୍ଞର ଅଂଶ ପାଇବ । ଯଜ୍ଞରେ ବଳି ଦିଆ ହେଉଥିବା ପଶୁର ମୁଣ୍ଡଟିମାନ ତୁମକୁ ମିଳିବ ।" ଇନ୍ଦ୍ର କହିଲେ ।

କାରିଗର ପ୍ରଲୁବ୍ଧ ହୋଇ ଯାଇ ବିଶ୍ୱରୂପଙ୍କ ଶିର କାଟିଦେଲା । ସେ ଗୋଟାଏ ଗୋଟାଏ ଶିର କାଟିବା ବେଳକୁ ତହିଁରୁ ଏକା ଧରଣର ଏକସହସ୍ର ପକ୍ଷୀ ଉଡ଼ିଯାଉଥାନ୍ତି । ବେଦପାଠ



କରୁଥିବା ମୁଣ୍ଡରୁ କପିଞ୍ଜଳ ପକ୍ଷୀ, ଭବିଷ୍ୟତ-ଦ୍ରଷ୍ଟା ମୁଣ୍ଡରୁ ଟିଟ୍ଟିଭ ପକ୍ଷୀ ଏବଂ ଆହାର ଗ୍ରହଣ କରୁଥିବା ମୁଣ୍ଡରୁ କୁଣ୍ଡାପଟି ପକ୍ଷୀଦଳ ଉଡ଼ିଗଲେ ।

ଏଥର ଇନ୍ଦ୍ର ଆଶ୍ୱସ୍ତ ହେଲେ । କିନ୍ତୁ ପରେ ପରେ ବ୍ରହ୍ମହତ୍ୟା ପାପର ଗ୍ଲାନିରେ ଘାରିହୋଇ ସେ ତାର ପ୍ରାୟଶ୍ଚିତ୍ତ କରିବାକୁ ତତ୍ପର ହେଲେ । ନିଜ ପୁତ୍ର-ରୂପୀ ବିଶ୍ୱରୂପଙ୍କ ନିଧନ ସମାଚାର ପାଇ ତ୍ୱଷ୍ଟୁ-ପ୍ରଜାପତି ଉତ୍ତେଜିତ ହୋଇ ଦେବଗଣଙ୍କୁ ଉଦ୍ଦେଶ୍ୟ କରି ପ୍ରଶ୍ନ କଲେ, "ହେ ଦେବଗଣ ! ଇନ୍ଦ୍ରକୃତ ଏ ଅପରାଧ ତୁମେମାନେ କିପରି ସହ୍ୟ କଲ ? ବେଶ୍ । ମୁଁ ଏହାର ପ୍ରତିଶୋଧ ନେବା ନିମନ୍ତେ ଏକ ପରାକ୍ରମୀ ପୁତ୍ର ସୃଷ୍ଟି କରିବି ।"

ଏହା କହି ତ୍ୱଷ୍ଟୁ-ପ୍ରଜାପତି ଅଥର୍ବଣ ମନ୍ତ୍ର ଉଚ୍ଚାରଣ କରି ଅଗ୍ନି ପ୍ରଜ୍ୱଳନ କଲେ । ତହିଁ ଭିତରୁ ତାଙ୍କ ମନ୍ତ୍ରପୂତ ଆବାହନ କ୍ରମେ ଅଗ୍ନି ଭଳି ତେଜସ୍ୱୀ ସନ୍ତାନ ଜଣେ ବାହାରିଆସିଲେ ।

ତ୍ୱଷ୍ଟୁ ସେ ଶିଶୁକୁ ଦେଖି କହିଲେ, "ଯଦି ବଡ଼ ହୋଇ ତୁମେ ଇନ୍ଦ୍ରର ବିନାଶ କରିପାରିବ, ତେବେ ଯାଇ ତୁମ ଜନ୍ମ ସାର୍ଥକ ହେଲା ବୋଲି ଜାଣିବି ।"

ବଢ଼ୁଁ ବଢ଼ୁଁ ସେ ଶିଶୁ ପ୍ରଚଣ୍ଡ ଆକାର ଧାରଣ କଲା । ସେ ଦିକ୍‌ବିଦିକ୍ ପ୍ରକମ୍ପିତ କଲା ଭଳି କଣ୍ଠରେ ପ୍ରଶ୍ନ କଲା, "ହେ ମୋର ସୃଜନ-କାରୀ ପିତଃ ! ମୋର ନାମ କ'ଣ ? ମୋତେ କେଉଁ ଉଦ୍ଦେଶ୍ୟରେ ଜନ୍ମ ଦେଲେ ? ମୋତେ କ'ଣ କରିବାକୁ ହେବ ନିର୍ଦ୍ଦେଶ ଦିଅନ୍ତୁ । ଆପଣଙ୍କ ନିର୍ଦ୍ଦେଶ ଅନୁସାରେ କାମ କରିବି ।"

ତ୍ୱଷ୍ଟୁ ପ୍ରଜାପତି କହିଲେ, "ବତ୍ସ ! ତୁମ ନାମ ବୃତ୍ର । ତୁମର ଅଗ୍ରଜ ବେଦଜ୍ଞ ବିଶ୍ୱରୂପଙ୍କୁ ଇନ୍ଦ୍ର ବଧ କରିଛି । ଇନ୍ଦ୍ରକୁ ବଧ କରି ସେ ଅନ୍ୟାୟର ପ୍ରତିଶୋଧ ନେବା ତୁମର କାମ । ଯେତେ ଶୀଘ୍ର ସମ୍ଭବ ସେ କାମ ସମ୍ପନ୍ନ କର ।"

ଏହା ପରେ ତ୍ୱଷ୍ଟୁ କେତେ ପ୍ରକାର ଅସ୍ତ୍ର ନିର୍ମାଣ କରି ବୃତ୍ରକୁ ଦେଲେ । ଶୁଭ ମୁହୂର୍ତ୍ତରେ

ଭିଷ୍ଟୁଙ୍କ ଆଶୀର୍ବାଦ ଧରି ବୃତ୍ର କାର୍ଯ୍ୟସାଧନ ସକାଶେ ବାହାରିଥିଲେ ।

ଏ ସମାଚାର ଇନ୍ଦ୍ରଙ୍କୁ ଅଗୋଚର ରହିଲ ନାହିଁ । ଦୂତମାନେ ତାଙ୍କୁ କହିଲେ, "ଆପଣଙ୍କୁ ବଧ କରିବା ନିମନ୍ତେ ଭିଷ୍ଟୁ ପ୍ରଜାପତି-ସୃଷ୍ଟ ପର୍ବତାକାର ବୃତ୍ର ଅଗ୍ରସର ହେଉଛି । ତା' ସାଥିରେ ଅଛନ୍ତି ସହକାରୀ ରୂପେ ଅନେକ ବଳବାନ୍ ରାକ୍ଷସ ।"



ତେଣେ ଇନ୍ଦ୍ରପୁରୀରେ ନାନା ଅଶୁଭ ଲକ୍ଷଣ ଦେଖାଗଲା । କାକ, ପେଚକ ଏବଂ ଗୃଧ୍ରମାନଙ୍କ ବିକଟ ରବରେ ଇନ୍ଦ୍ରପୁରୀର ଶାନ୍ତି ନଷ୍ଟ ହେଲା । ଦୂରରୁ ରାକ୍ଷସମାନଙ୍କ ହୁଙ୍କାର ଆସି ପ୍ରାସାଦ ପ୍ରାଚୀରରେ ପ୍ରତିଧ୍ୱନି ତୋଳିଲା ।

ଇନ୍ଦ୍ର ଅତ୍ୟନ୍ତ ଭୟଭୀତ ହୋଇ ଦେବଗୁରୁ ବୃହସ୍ପତିଙ୍କୁ ପଚାରିଲେ, "ଗୁରୁଦେବ ! ଏଭଳି ଅବସ୍ଥାରେ ପ୍ରତିକାର କ'ଣ ?"

ବୃହସ୍ପତି ଗମ୍ଭୀର ଭାବରେ କହିଲେ, "ଇନ୍ଦ୍ର ! ତୁମେ ଲୋଭ ଏବଂ ଆଶଙ୍କାର ବଶବର୍ତ୍ତୀ ହୋଇ ଯେଉଁ ଅପରାଧ କରିଛ, ତା'ର ଫଳଭୋଗରୁ ନିସ୍ତାର ପାଇବ କିପରି ? ବିଶ୍ୱରୂପ ଭଳି ନିରପରାଧ ତପସ୍ୱୀଙ୍କୁ ତୁମେ ପରିଣାମ ଚିନ୍ତା ନ କରି ହତ୍ୟା କଲ । ସେଭଳି ପାପ ଯିଏ କରିବ, ତାକୁ ତା'ର ମୂଲ୍ୟ ଦେବାକୁହିଁ ହେବ । ଏ ନିୟମ ଲଙ୍ଘନ ହେବାର ନୁହେଁ । ବିଶ୍ୱରୂପ ନିହତ ହେବା ଦିନରୁ ତୁମ ନିଜ ମନରେ କେଉଁ ସୁଖଶାନ୍ତି ରହିଛି ? ଅନ୍ୟାୟ କରିଆରେ ସୁଖ ପାଇବ, ଏ ସ୍ୱପ୍ନ ଭ୍ରାନ୍ତି ଛଡ଼ା ଆଉ କିଛି ନୁହେଁ । ଯେଉଁ ବୃତ୍ର ତୁମ ପୁରୀ ଆଡ଼କୁ ଧାବମାନ, ସେ ତୁମକୁ ଶାସ୍ତି ଦେବା ଉଦ୍ଦେଶ୍ୟରେହିଁ ଜାତ ହୋଇଛି । ତାକୁ ପଠାଇଛନ୍ତି ଭିଷ୍ଟୁ-ପ୍ରଜାପତି । ତା' ହାତରେ ରହିଛି ପ୍ରଚଣ୍ଡ ଶକ୍ତିଶାଳୀ ଅସ୍ତ୍ର ଶସ୍ତ୍ର । ତୁମେ ତା' କବଳରୁ ଖସିଯିବା ଅସମ୍ଭବ ।"

ବୃତ୍ର ସ୍ୱର୍ଗପୁରୀର ନିକଟବର୍ତ୍ତୀ ହୋଇଆସୁଛି ଜାଣି ଦେବତା ଓ ମୁନିଋଷିଗଣ ଏଣେତେଣେ ପଳାଇବାକୁ ଲାଗିଲେ । ସେମାନଙ୍କର ସେ



ଅବସ୍ଥା ଦେଖି ଇନ୍ଦ୍ର ଆହୁରି ଅଧିକ ସନ୍ତ୍ରସ୍ତ ହୋଇପଡ଼ିଲେ । ସେ ନିଜ ସେବକମାନଙ୍କୁ କହିଲେ, "ସଙ୍ଗେ ସଙ୍ଗେ ଯାଇ ରୁଦ୍ର, ଆଦିତ୍ୟ, ବସୁ ଏବଂ ଦିଗପାଳମାନଙ୍କୁ ବିମାନ ପ୍ରସ୍ତୁତ ରଖି ଯୁଦ୍ଧ ସକାଶେ ଆଗଭର ହେବାକୁ କହିଦିଅ ।"

ଇନ୍ଦ୍ରଙ୍କ ଅନୁରୋଧରେ ବୃହସ୍ପତି ତାଙ୍କର ହାତୀ ଉପରେ ଆରୋହଣ କଲେ । ପଛରେ ଚାଲିଲେ ଦେବଗଣ । ତେଣେ ବୃତ୍ର ହିମାଳୟ ଆରୋହଣ କରି ଇନ୍ଦ୍ରପୁରୀ ଅଭିମୁଖେ ଅଗ୍ରସର ହେଉଥାଏ । ମାନସସରୋବରର ଉତ୍ତର ଦିଗରେ ଦୁଇ ପକ୍ଷ ପରସ୍ପର ଭେଟିଲେ । ଘୁହୁଁ ଘୁହୁଁ ଯୁଦ୍ଧ ଲାଗିଗଲା ।

ଶହେ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା । ତ୍ରିଲୋକର ଅବସ୍ଥା ଶୋଚନୀୟ ହୋଇଗଲା । ଯୁଦ୍ଧରେ ଦେବଗଣଙ୍କର ଜୟର ସୂଚନା ମିଳିଲା ନାହିଁ । କ୍ରମେ ସେମାନେ ଛତ୍ରଭଙ୍ଗ ଦେବାକୁ ଲାଗିଲେ । ପ୍ରଥମେ ବରୁଣ ପଳାଇଗଲେ । ତା'ପରେ ବାୟୁଗଣ, ଯମ ଏବଂ ଅଗ୍ନିଦେବ ପୃଷ୍ଠଭଙ୍ଗ ଦେଲେ । ସେ ଅବସ୍ଥା ଦେଖି ଇନ୍ଦ୍ର ହାତୀ ଛାଡ଼ି ପଳାଇଗଲେ; ଦେବପକ୍ଷର ପରାଜୟ ଘଟିଲା ।

ବୃତ୍ର ନିଜ ଜନ୍ମଦାତା ତ୍ୱଷ୍ଟା-ପ୍ରଜାପତିଙ୍କ ପାଖକୁ ଆସି ପ୍ରଣାମ କରି କହିଲା, "ପିତଃ ! ଦେବଗଣ ଯେପରି ଦୟନୀୟ ଭାବରେ ପଳାୟନ କଲେ, ସେ ଦୃଶ୍ୟ ଦେଖି ସେମାନଙ୍କୁ ମାରିବାକୁ ମୋର ହାତ ଗଲା ନାହିଁ । ଇନ୍ଦ୍ର ଦୌଡ଼ି ଦୌଡ଼ି ପଳାଇଲା । ତା ହାତୀଟିକୁ ମୁଁ ନେଇଆସିଛି । ଆପଣ ମୋର ନମ୍ର ଭେଟି ସ୍ୱରୂପ ଏହାକୁ ଗ୍ରହଣ କରନ୍ତୁ । ମୋତେ ଆଉ କ'ଣ କରିବାକୁ ପଡ଼ିବ ଆଜ୍ଞା ଦିଅନ୍ତୁ ।"

ତ୍ୱଷ୍ଟା ପ୍ରଜାପତି ଆନନ୍ଦିତ ହୋଇ କହିଲେ, "ବତ୍ସ ! ତୁମ ଅସାଧାରଣ ପରାକ୍ରମ ଦେଖି ମୁଁ ଚମତ୍କୃତ । ମୋର ଶୋକର ଅବସାନ ଘଟିଛି । ମୁଁ ପୁଣି ମୁଣ୍ଡ ଉପରକୁ କରି ସମସ୍ତଙ୍କ ଆଗରେ ଯିବାଆସିବା କରିପାରିବି । ଶୁଣ, ଇନ୍ଦ୍ର ଉପରେ ବିଶ୍ୱାସ ରଖାଯାଇ ପାରେନା । ତୁମେ ବ୍ରହ୍ମାଙ୍କୁ ଧ୍ୟାନ କରି ତପସ୍ୟା କର । ଇନ୍ଦ୍ର ନାନା ଇନ୍ଦ୍ର-

ଜାଲ ଦ୍ୱାରା ତୁମକୁ ପଥଭ୍ରଷ୍ଟ କରିବାକୁ ଚେଷ୍ଟା କରିବ । ତୁମେ ଅବିଚଳିତ ରହିବା ଉଚିତ । ବ୍ରହ୍ମାଙ୍କଠାରୁ ଅମର ବର ପାଇ ଇନ୍ଦ୍ରକୁ ବଧ କରିବ । ତପସ୍ୟା ଦ୍ୱାରା ଅସମ୍ଭବକୁ ସମ୍ଭବ କରାଯାଇପାରେ । ମନେ ରଖ, ଇନ୍ଦ୍ର ତୁମ ଅଗ୍ରଜକୁ ନିର୍ମମ ଭାବରେ ହତ୍ୟା କରିଥିଲା । ତେଣୁ ଇନ୍ଦ୍ରକୁ ସଂହାର କରିବା ଏକାନ୍ତ ଦରକାର ।"

ବୃତ୍ର ତା' ପିତାଙ୍କଠାରୁ ଏ ନିର୍ଦ୍ଦେଶ ପାଇ ଗନ୍ଧମାଦନ ପର୍ବତ ଉଦ୍ଦେଶ୍ୟରେ ଚାଲିଲା । ନିତ୍ୟ ଗଙ୍ଗାରେ ସ୍ନାନ କରି, ଆହାର, ନିଦ୍ରା ପରିତ୍ୟାଗ କରି ଗନ୍ଧମାଦନ ଶିଖରରେ ବସି ସେ ବ୍ରହ୍ମାଙ୍କୁ ଧାନ କରେ । ଏ ଘଟଣାରେ ଇନ୍ଦ୍ର ପୁଣି ଆତଙ୍କିତ ହେଲେ । ବୃତ୍ର ଏକେ ଏତେ ଶକ୍ତିଶାଳୀ; ତହିଁ ଉପରେ ପୁଣି ତପସ୍ୟା କରି ଯଦି କୌଣସି ମହାନ୍ ବର ପାଇଯିବ, ତେବେ ସେ ଘୋର ବିପଦ ରୂପେ ଦେଖା ଦେବ ।

ଇନ୍ଦ୍ର ପୁଣି ଅପ୍‌ସରାମାନଙ୍କୁ ପଠାଇଲେ । ସେମାନେ ଯଥା ସାଧ୍ୟ ଚେଷ୍ଟା କରି ବୃତ୍ରକୁ ଟଳାଇ ନ ପାରି ଫେରିଯାଇ ଇନ୍ଦ୍ରଙ୍କୁ ସେ କଥା କହିଲେ ।

ସମୟକ୍ରମେ ବ୍ରହ୍ମା ବୃତ୍ରର ତପସ୍ୟାରେ ପ୍ରୀତ ହୋଇ ତାକୁ ଦେଖା ଦେଇ କହିଲେ, "ବତ୍ସ, କି ବର ଚାହୁଁଛ, କୁହ ।"

କରଯୋଡ଼ ହୋଇ ବୃତ୍ର କହିଲା, "ଭଗବାନ୍ ଆପଣଙ୍କ ଦର୍ଶନ ପାଇ ଧନ୍ୟ ହେଲି । ଯଦି ଅନୁଗ୍ରହ କରି ବର ଦେବେ, ତେବେ ମୋତେ ଏପରି ବର ଦିଅନ୍ତୁ, ଯେପରିକି ଧାତୁ, କାଷ୍ଠ ବା ଅନ୍ୟ-କୌଣସି ବ୍ୟବହାର୍ଯ୍ୟ ଅସ୍ତ୍ର ଦ୍ୱାରା ମୋତେ କେହି ମାରି ପାରିବ ନାହିଁ । ଯୁଦ୍ଧ ଯେତିକି ଅଧିକ ସମୟ ଲାଗିବ, ମୋର ଶକ୍ତି ବି ସେପରି ସେତିକି ଅଧିକ ହେବ ।"

ବ୍ରହ୍ମା ତଥାସ୍ତୁ କହି ଅନ୍ତର୍ହିତ ହେଲେ ।

ବୃତ୍ର ପରମାନନ୍ଦ ହୋଇ ପିତାଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ସବୁ କଥା ଶୁଣାଇଲେ ।

ତ୍ୱଷ୍ଟା ପ୍ରଜାପତି କହିଲେ, "ତୁମର ମଙ୍ଗଳ ହେଉ । ବିଶ୍ୱରୂପକୁ ହତ୍ୟା କରି ଇନ୍ଦ୍ର ଯେଉଁ ଅନ୍ୟାୟ କରିଛି, ତା'ର ପ୍ରତିଶୋଧ ନିଅ ।"



# ଶ୍ୱଶୁରଙ୍କ ଦୂରଦୃଷ୍ଟି !

ରାଜମୋହନ ଥିଲେ ଜମିଦାରଙ୍କ ଗୁମାସ୍ତା । ବହୁତ ଟଙ୍କା ଆୟ କରି ସେ ନିଜ ପାଇଁ ବଡ଼ କୋଠାଟାଏ ତିଆରି କଲେ । ତାଙ୍କ ସ୍ତ୍ରୀ ସୁଶୀଳା ତାଙ୍କ ସହ ଲଗାଇଲେ—ବାଡ଼ିର ଗୋଟାଏ କୋଣରେ ଛୋଟ କୋଠରିଟିଏ ତିଆରି କରାଯାଉ । ନିଜ ଶାଶୁଙ୍କୁ ନିଜ ପାଖରେ କୋଠାରେ ନ ରଖି ସେହି କୋଠରିରେ ଅଛୁଆଁ ଭଳି ରଖିବା ଥିଲା ତାଙ୍କ ଉଦ୍ଦେଶ୍ୟ ।

ତେବେ, କୋଠରି କାମ ପୂରା ହେବା ପୂର୍ବରୁ ସୁଶୀଳାଙ୍କ ଶାଶୁ, ଅର୍ଥାତ୍ ରାଜମୋହନଙ୍କ ବୃଦ୍ଧା ମାତା ମରିଗଲେ । ଏ ଘଟଣା ପରେ ପରେ ଜମିଦାର କୌଣସି କାରଣରୁ ରାଜମୋହନଙ୍କ ଉପରେ ବିରକ୍ତ ହୋଇ ତାଙ୍କୁ ଗୁମାସ୍ତା ପଦରୁ ନିକାଲିଦେଲେ । ରାଜମୋହନଙ୍କ ଆୟର ପନ୍ଥା ବନ୍ଦ ହୋଇଗଲା । ଏଣେ ଯାହା ସଞ୍ଚିଥିଲେ, ତାହା କୋଠା ତିଆରିରେ ଖର୍ଚ୍ଚ ହୋଇଯାଇଥିଲା । ସେ କୋଠାକୁ ଭଡ଼ାରେ ଲଗାଇ ଅନ୍ୟ ଗୋଟିଏ ଗାଁକୁ ଯାଇ ସପରିବାରେ ଛୋଟ ବସାଘରେ ରହିଲେ । କେତେ ବର୍ଷ ବିତିଗଲା । ରାଜମୋହନ ମରିଗଲେ । ତାଙ୍କ ବିବାହିତ ପୁଅ ଭଲ ବ୍ୟବସାୟ କରୁଥାଏ । ପୁଅ-ବୋହୂ ସହ ସୁଖରେ ରହିବେ ବୋଲି ସୁଶୀଳା କୋଠାଘରକୁ ଫେରିଲେ । ଘର ଦେଖି ତାଙ୍କ ବୋହୂ ଆନନ୍ଦରେ ଶାଶୁଙ୍କୁ କହିଲା, "ଶ୍ୱଶୁରଙ୍କ ଦୂରଦୃଷ୍ଟି କେତେ ବେଶୀ ! ଖାଲି ପୁଅବୋହୂ ପାଇଁ ଯେ କୋଠା ବାଢ଼େଇଥିଲେ ତାହା ନୁହେଁ, ତୁମ ପାଇଁ ବି ବାଡ଼ି କୋଣରେ କୋଠରିଟିଏ କରିଯାଇଛନ୍ତି ।"





# ଚତୁର୍ଥ ଚୋର

କୌଣସି ଗୋଟିଏ ରାଜ୍ୟରେ ତିନିଜଣ କୁଖ୍ୟାତ ଡାକୁ ଥା'ନ୍ତି । ସେମାନେ ପ୍ରତିଦିନ କିଛି ନା କିଛି ଚୋରି କରନ୍ତି, ହେଲେ କେବେ ମଧ୍ୟ ଧରାପଡ଼ନ୍ତି ନାହିଁ । ସେମାନଙ୍କ ନାମ ପଡ଼ିବା ମାତ୍ରେ ଧନୀ ଲୋକେ ଥରୁଥିଲେ । ସେମାନଙ୍କୁ ବନ୍ଦୀ କରିବା ଉଦ୍ଦେଶ୍ୟରେ ସେହି ଦେଶର ରାଜା ନିଜେ ଚୋରର ବେଶ ଧରି ରାତିସାରା ବୁଲୁଥା'ନ୍ତି ।

କିଛିଦିନ ଉତ୍ତରୁ ଥରେ ରାଜା ଡାକୁମାନଙ୍କ ଆଡ୍ଡା ଜାଗାର ସନ୍ଧାନ ପାଇଲେ । ରାଜା ସେଠାରେ ଯେତେବେଳେ ପହଞ୍ଚିଲେ ସେତେବେଳେ ସେମାନେ ସେଦିନର ଚୋରି ବିଷୟରେ ଚର୍ଚ୍ଚା କରୁଥିଲେ ।

ନୂଆ ଡାକୁକୁ ଦେଖି ପୁରୁଣା ଡାକୁଙ୍କ ମନରେ ସନ୍ଦେହ ହେଲା । ସେମାନେ ପଚାରିଲେ,

"ତୁମେ କିଏ ? ଏଠାକୁ କି କାମରେ ଆସିଛ ?"

"ମୁଁ ବି ଜଣେ ଡାକୁ । ତୁମେମାନେ ଜଣାଶୁଣା ଡାକୁ । ତେଣୁ ମୁଁ ବି ମୋ ଶକ୍ତିର ପରିଚୟ ଦେବାକୁ ଆସିଲି ।" ରାଜା କହିଲେ ।

ସେମାନେ ହସି ହସି କହିଲେ, "କ'ଣ ଆମ ଶକ୍ତି ଉପରେ ତୁମର ସନ୍ଦେହ ହେଉଛି ?"

"ନାଁ, ତେବେ କୁହନା ମୁଁ ଟିକିଏ ଶୁଣେ କିମିତି ପ୍ରକାର ଶକ୍ତି ?" ରାଜା କହିଲେ ।

"ମୁଁ ଯେତେ ବଡ଼ ତାଲା ହେଲେ ବି ମୁହୂର୍ତ୍ତକରେ ଖୋଲି ଦେବି ।" ପ୍ରଥମଟି କହିଲା ।

"ମୁଁ ମାଟି ଉପରେ କାନ ପାତି ମଧ୍ୟ କହିଦେଇ ପାରିବି ଧନ କେଉଁଠି ଗୁପ୍ତରେ ରଖା ହୋଇଛି ।" ଦ୍ୱିତୀୟ ଡାକୁ କହିଲା ।

"ଥରେ ମୁଁ ଯାହାକୁ ଦେଖିଥାଏ, ସିଏ ଯେତେ ଛଦ୍ମବେଶରେ ଆସିଲେ ମଧ୍ୟ ମୁଁ ଚିହ୍ନି-

(ପଚାଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ)

ନେବ ।" ଭୂତଗସ୍ତ ଡାକୁ କହିଲ ।

ତା'ପରେ ତିନିଜଣ ମିଳି ରାଜାଙ୍କୁ ପଚାରିଲେ, "ଏବେ ତୁମେ କୁହ ତୁମର କି ଶକ୍ତି ଅଛି ?"

ରାଜା ମହାଚିନ୍ତାରେ ପଡ଼ିଲେ । ତେବେ ବୁଦ୍ଧି ଖର୍ଚ୍ଚ କରି କହିଲେ, "ମୁଁ ଯଦି ମୋ ମୁଣ୍ଡ ଉଡାରି ତଳେ ରଖିବି ତେବେ ଯାହାକୁ ବି ଯମଲୋକକୁ ପଠାଇପାରିବି । ଆଉ ଡାହାଣ ଆଙ୍ଗୁଠିଟି ଉପରକୁ ଉଠାଇଦେବି ତ ମରିବାକୁ ଯାଉଥିବା ଲୋକଙ୍କୁ ବଞ୍ଚାଇ ପାରିବି ।"

ଏକଥା ଶୁଣି ତିନିଜଣ ଖୁବ୍ ଖୁସୀ ହେଲେ । କାରଣ ଏତେ ବଡ଼ ଶକ୍ତିଶାଳୀ ଡାକୁ ତାଙ୍କ ଦଳରେ ଯୋଗ ଦେଇଛି ।

ତା'ପରେ ରାଜା ପଚାରିଲେ, "ଆଜି ରାତିରେ ଆମେ କେଉଁଠାକୁ ଚୋରି କରିବାକୁ ଯିବା ?"

"ତୁମେ ଯାହା କହିବ । ଯେଉଁଠିକି ଯିବାକୁ କହିବ ଯିବା । ତୁମେ ମଧ୍ୟ ଆମର ଶକ୍ତି ପ୍ରତ୍ୟକ୍ଷ ଦେଖି ପାରିବ ।" ଡାକୁମାନେ କହିଲେ ।

"ତା'ହେଲେ ଚାଲ ଆଜି ରାଜାଙ୍କ ଧନ-ଭଣ୍ଡାର ଲୁଟ କରିବା ।" ରାଜା ପ୍ରସ୍ତାବ ଦେଲେ ।

ସେଇକଥା ହେଲା । ଚାରିଜଣଯାକ ଡାକୁ ଚୋରି କରିବା ନିମନ୍ତେ ରାଜମହଲ ଆଡ଼େ ଚାଲିଲେ । ପହରିବାଲା ଆଖିରେ ଧୂଳି ଦେଇ କୌଣସିମତେ ଭିତରେ ପ୍ରବେଶ କଲେ । ଦ୍ୱିତୀୟ ଡାକୁ ମାଟିରେ କାନପାତି କିଛି ଶୁଣିଲା ଓ କହିଲା, "ଧନଭଣ୍ଡାର ତ ହେଇ ସେପଟକୁ



ଅଛୁ । ସାବଧାନ ହୋଇ ଚାଲ ।"

ଚାରିଜଣ ଯାଇ ଧନଭଣ୍ଡାର ନିକଟରେ ପହଞ୍ଚିଲେ । ପ୍ରଥମ ଡାକୁ ମୁହୂର୍ତ୍ତକ ମଧ୍ୟରେ ତାଲା ଖୋଲିଦେଲା । ଓ ଡାକୁମାନେ ଭିତରକୁ ଗଲେ । ସେଇ ଅବସରରେ ରାଜା ଅନ୍ଧକାରରେ କୁଆଡ଼େ ଛପିଗଲେ ଓ ସେଠାରୁ ଖସିଯାଇ ସିପାହୀମାନଙ୍କୁ ପଠାଇଦେଲେ । ତିନିଜଣ ଡାକୁ ଚୋରିମାଲ ସହିତ ଧରାପଡ଼ିଲେ ।

ଦ୍ୱିତୀୟ ଦିନ ସେମାନଙ୍କୁ ଦରବାରରେ ହାଜର୍ କରାଗଲା । ରାଜାଙ୍କୁ ଦେଖିବା ମାତ୍ରେ ତୃତୀୟ ଡାକୁ ତା'ର ସାଙ୍ଗମାନଙ୍କୁ କହିଲା, "କାଲି ଆମ ସହିତ ଚୋରି କରିବାକୁ ଆସିଥିବା ନୂଆ ଲୋକ ତ ଏଇ ରାଜା ।"

ବିଚାର ପରେ ରାଜା ତାଙ୍କ ମୁଦି ହାତରୁ ଉତାରି ତଳେ ରଖି ଡାକୁମାନଙ୍କର ମୃତ୍ୟୁଦଣ୍ଡ ଆଦେଶ ଦେଲେ । ପରଦିନ ସେମାନଙ୍କୁ ଫାଶୀ-ଖୁଣ୍ଟ ପାଖକୁ ନିଆଗଲା । ମନ୍ତ୍ରୀ ସେଠାରେ ପହଞ୍ଚି ଡାକୁମାନଙ୍କୁ ପଚାରିଲେ, "ତୁମର ଅନ୍ତିମ ଇଚ୍ଛା କ'ଣ କୁହ ।"

"ଆମେ କେବଳ ରାଜାଙ୍କୁ ଗୋଟିଏ ପ୍ରଶ୍ନ ପଚାରିବୁ । ତାହାହିଁ ଆମର ଅନ୍ତିମ ଇଚ୍ଛା ।" ଡାକୁମାନେ କହିଲେ ।

ରାଜା ଆସି ପହଞ୍ଚିଲେ ଓ ପଚାରିଲେ, "ତୁମ୍ଭେମାନେ ମୋତେ କ'ଣ ପ୍ରଶ୍ନ କରିବାକୁ ଚାହୁଁ ?" "ମହାରାଜ ! କଥା କ'ଣ କି ଆମେ ଆମ ଶକ୍ତିସବୁ ଆପଣଙ୍କ ଆଗରେ ପ୍ରଦର୍ଶନ କଲୁ । କିନ୍ତୁ ଆପଣ ନିଜର ଦୁଇ ଶକ୍ତିରୁ ମାତ୍ର ଗୋଟିଏ ଶକ୍ତି ପ୍ରଦର୍ଶନ କଲେ । ଦ୍ୱିତୀୟଟି ମଧ୍ୟ ଆମେ ଦେଖି ଖୁସୀ ହେବୁ । ଏହାହିଁ ଆମେ ଚାହୁଁ ।" ତୃତୀୟ ଡାକୁ କହିଲା ।

ରାଜା ଟିକିଏ ହସିଲେ ଓ ନିଜର ତର୍ଜମା ଆଙ୍ଗୁଠିକୁ ଉପରକୁ ଉଠାଇଲେ ଏବଂ ପର-କ୍ଷଣରେହିଁ ସିପାହୀମାନେ ଡାକୁମାନଙ୍କୁ ବନ୍ଧନ-ମୁକ୍ତ କଲେ ।

ତା'ପରେ ଡାକୁମାନେ ଚୋରିକାମ ସମ୍ପୂର୍ଣ୍ଣ ରୂପେ ଛାଡ଼ି ଦେଲେ ଓ ରାଜାଙ୍କ ଦରବାରରେ ଚାକିରି ପାଇ ରାଜାଙ୍କୁ ଶ୍ରଦ୍ଧାଭକ୍ତି ଦେଖାଇ ଭଲ ଭାବରେ କାମକରି ସାଧୁ ଜୀବନ ବିତାଇଲେ ।



# ହିସାବ !

ବଳରାମବାବୁଙ୍କ ପୁଅ ସହ ଚନ୍ଦ୍ରମୋହନବାବୁଙ୍କ ଝିଅର ବିବାହ ହେଲା । ବଳରାମ ଯୌତୁକ ବାବଦରେ ଚନ୍ଦ୍ରମୋହନଙ୍କଠାରୁ ଦଶ ହଜାର ଟଙ୍କା ନେଲେ ।

ଦଶ ବର୍ଷ ପରେ ଚନ୍ଦ୍ରମୋହନ ପନ୍ଦର ହଜାର ଟଙ୍କା ସହ ତାଙ୍କ ଦ୍ୱିତୀୟ ଝିଅର ବିବାହ ଦେଲେ । ବଳରାମ ସେତେବେଳେ ତାଙ୍କୁ ଧମକ ଦେଲେ : "ମୋ ପୁଅ କେଉଁ ଗୁଣରେ କମ୍ ଥିଲା ଯେ ତୁମେ ଦଶ ହଜାର ଦେଇଥିଲ ? ମୋ ହିସାବରେ ମୋର ତୁମଠାରୁ ଆଉ ପାଞ୍ଚ ହଜାର ପ୍ରାପ୍ୟ ।"

ଚନ୍ଦ୍ରମୋହନ କ'ଣ କହିବେ ବୁଝିପାରିଲେ ନାହିଁ । ଗ୍ରାମମୁଖ୍ୟଙ୍କ ପାଖକୁ କଥା ଗଲା । ମୁଖ୍ୟ ବଳରାମଙ୍କୁ ଡକାଇ କହିଲେ, "ଦଶ ବର୍ଷ ତଳେ ତୁମ ପୁଅ ପାଇଁ ଦଶ ହଜାର ନେଇଥିଲ ପରା ? ସୁଧ ସହ ତାହା ବର୍ତ୍ତମାନ ବାଇଶ ହଜାର ହେବ । ତେଣୁ ତୁମର ପ୍ରାପ୍ୟ ପାଞ୍ଚହଜାର ଯିବା ପରେ ତୁମେ ବାକି ସାତ ହଜାର ପାଇଁ ଚନ୍ଦ୍ରମୋହନ ନିକଟରେ ଋଣୀ । ହିସାବ ବୁଝିଲ ?"

ବଳରାମ କାନମୁଣ୍ଡା ଆଉଁସି ଚାଲିଗଲେ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

## ପୁରସ୍କୃତ ପରିଚୟୋକ୍ତି ଜୁନ୍ ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ସ୍ବର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଏପ୍ରିଲ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଜାନୁଆରୀ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "ପକ୍ଷୀ ସିନା ଉଡ଼ିଯିବ ନୀଳ ନଭ କୋଳେ !"

ଦ୍ୱିତୀୟ ଫଟୋ : "ଉଡ଼ିବୁ କି ଅଶ୍ୱେ, ବାବୁ ! ତାର ସମ୍ଭାଳିଲେ !"

ପୁରସ୍କାର ବିଜୟୀ : ରାମଚନ୍ଦ୍ର ପ୍ରଧାନ, ମଙ୍ଗଳପୁର, କଟକ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

**Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras-600 026 (India). Controlling Editor: NAGI REDDI.**

# ସ୍ୱୟମ୍ବର

ଆପଣା ପ୍ରଯତ୍ନ ଫଳରେ ଶେଠ୍ ରତନ୍‌ଲାଲ୍ ଉନ୍ନତ କରିଥିଲେ । ଭାଗ୍ୟରୁ ସେ ପାଇଥିଲେ ଦୁଇଟି ଯୋଗ୍ୟ ସନ୍ତାନ—ରାମ ଏବଂ ଲକ୍ଷ୍ମଣ । ସେ ଦୁହେଁ ଯେମିତି ବୁଦ୍ଧିମାନ ଓ ଶିକ୍ଷିତ ଥିଲେ, ସେମିତି ପିତୃଭକ୍ତ ବି ଥିଲେ । ଦୁହେଁ କେଉଁ ଘରରୁ ଭଲ ବୋହୂଟିମାନ ଆଣିବେ, ବର୍ତ୍ତମାନ ତାହାହିଁ ଥିଲା ଶେଠ୍ ରତନ୍‌ଲାଲଙ୍କ ଉତ୍କଣ୍ଠା ।

ଶେଠ୍ ରତନ୍‌ଲାଲଙ୍କୁ ଏକଦା ସହାୟତା କରିଥିଲେ ଅମିରଚନ୍ଦ ଭାର୍ଗବ । ସେ ଋଣ କିପରି ପରିଶୋଧ କରିବେ, ଶେଠ୍ ସେହି ସୁଯୋଗକୁ ଅପେକ୍ଷା କରିଥାନ୍ତି । ଦୀର୍ଘଦିନ ବିଦେଶରେ ଥାଇ ଶେଠ୍ ଜାଣିନଥିଲେ ଯେ ଭାର୍ଗବ ଆଉ ଇହଧାମରେ ନାହାନ୍ତି । ଦିନେ ତାଙ୍କ ପୁଅ ଦୁହିଁଙ୍କ ବିବାହ ସକାଶେ କେତେକ ପ୍ରସ୍ତାବ ଧରି ଆସିଥିବା ଜଣେ ଘଟକଙ୍କଠାରୁ ଶେଠ୍ ସେ ସମ୍ବାଦ ପାଇଲେ । ସେ ଆତୁର ବି ଶୁଣିଲେ! ଭାର୍ଗବଙ୍କ ପ୍ରଥମ ସ୍ତ୍ରୀ ଶାନ୍ତି ନାମକ କନ୍ୟାଟିଏ ଛାଡ଼ି ମରି ଯାଇଥିଲେ । ଶାନ୍ତିର ମଙ୍ଗଳ ହେବ ବୋଲି ଭାର୍ଗବ ଆଉ ଥରେ ବିବାହ କଲେ । କିନ୍ତୁ ତାଙ୍କ ଦ୍ୱିତୀୟ ସ୍ତ୍ରୀ ଦୁର୍ଗାଦେବୀ ଶାନ୍ତିକୁ ଦାସୀ ଭଳି ଦେଖିଲେ; ନିଜ ଝିଅ ରୂପାକୁ ଅତ୍ୟନ୍ତ ସ୍ନେହ କଲେ । ସ୍ୱାମୀଙ୍କ ମୃତ୍ୟୁ ପରେ ଦୁର୍ଗାଦେବୀଙ୍କ ଉପଦେଷ୍ଟା ହେଲେ ମାଖନ୍‌ଲାଲ ନାମକ ପ୍ରତିବେଶୀ । ମାଖନ୍‌ଲାଲଙ୍କ ଏକମାତ୍ର ଉଦ୍ଦେଶ୍ୟ ହେଲା ନିଜର ବିପଥଗାମୀ ପୁଅ ସହ କେମିତି ହେଲେ ରୂପାର ବିବାହ ହୋଇଗଲେ ସେ ଦୁର୍ଗାଦେବୀଙ୍କ ସବୁ ସମ୍ପତ୍ତିର ମାଲିକ ହୋଇ ବସିବେ ।

ଶେଠ୍ ରତନ୍‌ଲାଲ୍ ଭାବିଲେ ଶାନ୍ତି ଓ ରୂପାକୁ ନିଜର ଦୁଇ ପୁଅଙ୍କ ବୋହୂ କରି ଆଣିଲେ ଭାର୍ଗବଙ୍କ ପ୍ରତି ତାଙ୍କ କର୍ତ୍ତବ୍ୟ ସେ କିଛିଟା ତୁଲାଇ ପାରନ୍ତେ । କିନ୍ତୁ ତାଙ୍କ ପ୍ରସ୍ତାବ ଦୁର୍ଗାଦେବୀ ଓ ମାଖନ୍‌ଲାଲଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେଲା । ସେ ବହୁତ ଦୁଃଖିତ ହେଲେ ।

ତାଙ୍କର ଦୁଇ ପୁଅ ତାଙ୍କ ମନକଥା ବୁଝିଲେ । ସେମାନେ କ'ଣ କୌଣସି ଉପାୟରେ ସେ ଦୁଇ କନ୍ୟାଙ୍କୁ ବିବାହ କରି ବାପାଙ୍କୁ ତୁଷ୍ଟ କରି ପାରିବେ ନାହିଁ? କାହିଁକି ନୁହେଁ?

କ'ଣ ସେମାନଙ୍କ ଯୋଜନା? ତାହା କିପରି କାର୍ଯ୍ୟକାରୀ ହେବ?

—ବାସନ୍ତରେ ।





ବି. ନାଗୀରେଡ୍ଡୀଙ୍କ ନୂତନ ପାରିବାରିକ ଚିତ୍ର 

చందమామ අම්බිලි මාමා





Chandamama is published in TWELVE INDIAN Languages including English: educating and entertaining millions of readers. Our SINHALA Language edition is now dedicated to delight the children of SRILANKA

**CHANDAMAMA**

*the magazine for children makes the young and old WISE.*




চাঁদমামা **CHANDAMAMA** चांदोबा

# ରାମ ଓ ଶ୍ୟାମ...
## ଅନ୍ୟ ଗ୍ରହର ଅତିଥି





















